# Geography

## Part III.

IN

ORIYA

Prepared in accordance with the Madras
Middle School Syllabus.

BY

Ramachandra Acharya, B. A.
Headmaster, M. O. M. School, Berhampur.

THE STUDENTS' STORE,
Printers & Publishers,
*BERHAMPUR.*

...ore Middle School Series:—

# ଭୂଗୋଳ ଶିକ୍ଷା

## ତୃତୀୟ ଖଣ୍ଡ



ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏଙ୍କ

ସଙ୍କଳିତ

[ମାନ୍ଦ୍ରାଜ-ଶିକ୍ଷା-ବିଭାଗୀୟ ଶିକ୍ଷା-ସୂଚୀ ଅନୁଯାୟୀ ଲିଖିତ]

# Geography

## Part III

BY

RAMACHANDRA ACHARYA, B. A.

ପ୍ରଥମ ସଂସ୍କରଣ

Printed & Published
BY
**The Students' Store**
*AT THE STORE PRESS,*
BERHAMPORE
(GANJAM)
1928

ମୂଲ୍ୟ ଏଗାର ଅଣା ମାତ୍ର

Price As 11

# ଷ୍ଟୋର ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଭକ୍ତିଯୋଗ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୧ ।୦ |
| ୨ | ଶିଶୁଭକ୍ତ (୩ୟ ସଂସ୍କରଣ) | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ | ଟ ୦ ୳ |
| ୩ | ପ୍ରଣୟପ୍ରବାହ (ଉପନ୍ୟାସ) | ,, | ଟ ୧ । |
| ୪ | ପଦ୍ମିନୀ ,, | ,, | ଟ ୦ ୳ |
| ୫ | କମଳକୁମାରୀ ,, | ,, | ଟ ୧ ୳ |
| ୬ | ସ୍ୱାସ୍ଥ୍ୟସୋପାନ | ,, | ଟ ୦ ୳ |
| ୭ | ହିତକଥା ୧ମ ଭାଗ (ମିତ୍ରଲାଭ) | ,, | ଟ ୦ ।୵ |
| ୮ | ,, ୨ୟ ଭାଗ (ସୁହୃଦ୍‌ଭେଦ) | ,, | ଟ ୦ ୳ |
| ୯ | ,, ୩ୟ ଭାଗ (ବିଗ୍ରହ) | ,, | ଟ ୦ ୳ |
| ୧୦ | ବେତାଳ କଥା | ,, | ଟ ୦ ୳୵ |
| ୧୧ | ଦ୍ରୌପଦୀ | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ ୳ |
| ୧୨ | ସଂଯୁକ୍ତା | ଶ୍ରୀ ଦୟାନିଧି ମିଶ୍ର ବି. ଏ ଏଲ୍. ଟି | ଟ ୦ ୳ |
| ୧୩ | ରାଣା ପ୍ରତାପସିଂହ | ,, | ଟ ୦ ୳ |
| ୧୪ | ବତିଶ ସିଂହାସନ | ଶ୍ରୀ ଗଣପତି ପତି | ଟ ୦ ୳୵ |
| ୧୫ | ଶ୍ରୀକୃଷ୍ଣ | ଶ୍ରୀ ବନମାଳୀ ମିଶ୍ର କାବ୍ୟତୀର୍ଥ | ଟ ୦ ୳ |
| ୧୬ | ଶ୍ରୀ ଚୈତନ୍ୟ ଦେବ | ଶ୍ରୀ ଗଣପତି ପତି | ଟ ୦ ୳ |
| ୧୭ | ମିବାର | ଶ୍ରୀ ଶିବପ୍ରସାଦ ଦାସ | ଟ ୧ । |
| ୧୮ | ପଦ୍ମମଲା (କାବ୍ୟ) | ଶ୍ରୀ ନୀଳକଣ୍ଠ ରଥ | ଟ ୦ ।୵ |
| ୧୯ | ଦାନ ଦର୍ପଣ (କର୍ଣ୍ଣ) | ,, | ଟ ୦ । |
| ୨୦ | ,, (ହରିଶ୍ଚନ୍ଦ୍ର) | ,, | ଟ ୦ । |
| ୨୧ | ବିଲ୍ୱମଙ୍ଗଳ | ଶ୍ରୀ କୃଷ୍ଣଚନ୍ଦ୍ର କର | ଟ ୦ ୳ |
| ୨୨ | ଯଯାତି | ଶ୍ରୀ ଶ୍ରୀକଣ୍ଠ ଶତପଥୀ | ଟ ୦ ୬ |

# ସୂଚୀ



—:o:—

## ଦ୍ୱିତୀୟ ଭାଗ

### ଉତ୍ତର ଓ ଦକ୍ଷିଣ ଆମେରିକା

ତୃତୀୟ ଭାଗ

ଅଷ୍ଟ୍ରେଲିଆ



ନ୍ୟୁଜିଲଣ୍ଡ



ପଲିନିସିଆର

## ଚତୁର୍ଥ ଭାଗ

### ପ୍ରାକୃତିକ ଭୂଭାଗ



——୦——

## ବାଳ ବିନୋଦ ଗ୍ରନ୍ଥମାଳା

| | | | |
|---|---|---|---|
| ୧ | ଗୋପଲୀଳା | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୨ | ପୁରାଣ କଥା ୧ମ | ଜନୈକ ଶିକ୍ଷକ | ଟ ୦ ୵ |
| ୩ | ମାର୍କଣ୍ଡେୟ | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. | ଟ ୦ । |
| ୪ | ପୁରାଣ କଥା ୨ୟ ଭାଗ | ଜନୈକ ଶିକ୍ଷକ | ଟ ୦ ୵୨ |
| ୫ | ସୀତାଦେବୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ଟ ୦ । |
| ୬ | ଛୋଟ ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଟ ୦ ।୵ |
| ୭ | ଛୋଟ ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ୦ ୳୵ |
| ୮ | ବାଳବୀର ଅଭିମନ୍ୟୁ | ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ | ଟ ୦ ୳ |
| ୯ | ବିଶ୍ୱାମିତ୍ର | ଶ୍ରୀ ବାସୁଦେବ ମହାପାତ୍ର | ଟ ୦ । |
| ୧୦ | କର୍ଣ୍ଣ | ,, | ଟ ୦ । |
| ୧୧ | ଓଡ଼ିଶାର ଇତିହାସ-କଥା | ଶ୍ରୀ ଉଦୟନାଥ ଷଡ଼ଙ୍ଗୀ | ଟ ୦ । |
| ୧୨ | ଧ୍ରୁବ | ଶ୍ରୀ ଦୟାନିଧି ମିଶ୍ର ବି. ଏ. ଏଲ୍, ଟି. | ଟ ୦ । |
| ୧୩ | ପୁରାଣକଥା ଲହରୀ | ଶ୍ରୀ ଗଙ୍ଗାଧର ମହାପାତ୍ର ଏଲ୍. ଟି | ଟ ୦ ୳ |
| ୧୪ | ଯୁଧିଷ୍ଠିର | ଶ୍ରୀ ନୀଳକଣ୍ଠ ଦାଶ | ଟ ୦ ୳ |
| ୧୫ | ପୁରାଣକଥା ୩ୟ ଭାଗ | ଜନୈକ ଶିକ୍ଷକ | ଟ ୦ ୷ |
| ୧୬ | ଭରତ | ଶ୍ରୀ ନୀଳକଣ୍ଠ ଦାଶ | ଟ ୦ ।୵ |
| ୧୭ | ହିତୋପଦେଶ-କଥା | ,, | [ ଯନ୍ତ୍ରସ୍ଥ ] |
| ୧୮ | ହରିଶ୍ଚନ୍ଦ୍ର | ଶ୍ରୀ ଦାମୋଦର ମିଶ୍ର | [ ଯନ୍ତ୍ରସ୍ଥ ] |
| ୧୯ | ଅନ୍ନପୂର୍ଣ୍ଣା | ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ | [ ଯନ୍ତ୍ରସ୍ଥ ] |
| ୨୦ | ଭୀମ | ,, | ,, |
| ୨୧ | ତୁଳସୀ ଦାସ | ,, | ,, |
| ୨୨ | ବାଲ୍ମୀକି | ,, | ,, |
| ୨୩ | କୁନ୍ତୀ | ଶ୍ରୀ ଜଗନ୍ନାଥ ମହାପାତ୍ର | ,, |

ପ୍ରାପ୍ତି ସ୍ଥାନ:—

**ଛାତ୍ର ଭଣ୍ଡାର—ବ୍ରହ୍ମପୁର**

# ଭୂଗୋଳ ଶିକ୍ଷା

## ତୃତୀୟ ଖଣ୍ଡ

### ପ୍ରଥମ ଭାଗ

## ଆଫ୍ରିକା

### ୧ କୃଷ୍ଣ ବା ଅନ୍ଧକାରମୟ ମହାଦେଶ

ଜଗତର ସଭ୍ୟତା-ବିକାଶରେ ଆଫ୍ରିକା କିଛି ସାହାଯ୍ୟ କରି ନାହିଁ । ଏହାକୁ କହନ୍ତି, 'କୃଷ୍ଣ ବା ଅନ୍ଧକାରମୟ ମହାଦେଶ' (The Dark Continent) । ଏ ମହାଦେଶକୁ ଏ ନାମ ଦିଆ ଯାଇଛି କାହିଁକି ? ଏହାର ଦୁଇଟି କାରଣ ସ୍ଥିର କରା ଯାଇପାରେ:—୧ ଆଫ୍ରିକା କୃଷ୍ଣ-ବର୍ଣ୍ଣ ନିଗ୍ରୋଜାତିର ବାସସ୍ଥାନ ୨ ଆଗେ ଏ ମହାଦେଶର ମଧ୍ୟଭାଗରେ ପ୍ରବେଶ କରିବା ଗୋଟାଏ ଅତି କଠିନ ବ୍ୟାପାର ଥିଲା ।

ଆଫ୍ରିକାର ମଧ୍ୟଭାଗ ଜଗତର ଏକ ଦୁଷ୍ପ୍ରବେଶ, ଦୁର୍ଭେଦ୍ୟ ସ୍ଥାନ କହିଲେ ଚଳେ । ବହୁ କାଳ ଏହା ଅଜ୍ଞାତ ଅବସ୍ଥାରେ ପଡ଼ି ରହି ଥିଲା । ଆରବଜାତି ହଜାର ହଜାର ବର୍ଷକାଳ ଆଫ୍ରିକାର ଉତ୍ତରି ଉପକୂଳରେ ପର୍ଯ୍ୟଟନ କରି ଆଫ୍ରିକାର ସେହି ଭାଗଟିମାତ୍ର ଜାଣିପାରିଥିଲେ । ଆରବ ଦେଶର ବଣିକ ଓ ଜଳଦସ୍ୟୁମାନେ (pirates) ଲୋହିତସାଗର ଉପକୂଳ ମଧ୍ୟ ଜାଣି ପାରିଥିଲେ । ଭାରତ ମହାସାଗରର ଆଫ୍ରିକା-ଉପକୂଳରେ ଆରବ ବଣିକମାନେ ବାଣିଜ୍ୟ କରୁଥିଲେ, ଆରବ ଜଳଦସ୍ୟୁ ବା ବମ୍ବେଟିଆମାନେ ଚୋରି, ଡକାଏତି କରୁଥିଲେ ।

ଅଥଚ ଏ ମହାଦେଶର ମଧ୍ୟଭାଗଟି ବହୁ କାଳ ଜଗତବାସିଙ୍କର ଅଜ୍ଞାତ ଥିଲା—ଆମେରିକା ଅବିଷ୍କୃତ ହେବା ପରେ, ଅନେକ ଦିନ ଯାଏଁ ମଧ୍ୟ ତାହା ସେପରି ଅଜଣା, ଅନ୍ଧାରିଆ ରାଜ୍ୟ ହୋଇ ପଡ଼ିଥିଲା । ଏହାର କାରଣ ତଳେ ଦିଆଗଲା ।

(କ) ଆଫ୍ରିକାର ସମଗ୍ର ଉତ୍ତର ଭାଗଟି ପୃଥିବୀର ବୃହତ୍ତମ ମରୁଭୂମିରେ ଅଚ୍ଛନ୍ନ । ମଧ୍ୟ-ଆଫ୍ରିକାର ପାର୍ବତ୍ୟ, ଅସଭ୍ୟ ଲୋକେ ସାହାରା ମରୁଭୂମି ପାର ହୋଇ ୟୁରୋପକୁ ଯାଇ ପାରୁ ନ ଥାନ୍ତି । କେବଳ ଓଟ ସାହାଯ୍ୟରେ ମରୁଭୂମି ପାର ହେବାର କଥା । ତେବେ ଓଟ ଆଫ୍ରିକାର ଅଦିମ (native) ପ୍ରାଣୀ ନୁହେ । ଏଣୁ ଆଫ୍ରିକାର ଲୋକେ ସାହାରା ଭିତରେ ଯାଇ ପାରୁ ନ ଥିଲେ । ଆରବବଣିକମାନେହିଁ ସର୍ବ ପ୍ରଥମରେ ଆଫ୍ରିକାକୁ ଓଟ ଧରି ଗଲେ—ସେଇ ଦିନୁ ଆଫ୍ରିକା-ବାସିମାନେ ଓଟର ବ୍ୟବହାର ଶିଖିଲେ, ମରୁଭୂମି-ଯାତ୍ରା ଆରମ୍ଭ କଲେ । ଆଫ୍ରିକାର ଲୋକେ ସମୁଦ୍ର-ଯାତ୍ରା ବି ଜାଣି ନ ଥିଲେ ।

(ଖ) ୟୁରୋପ ଓ ଏସିଆର ଲୋକମାନେ ମଧ୍ୟ ସାହାରା-ପ୍ରତିବନ୍ଧକ ଯୋଗେ ଆଫ୍ରିକାର ମଧ୍ୟସ୍ଥାନକୁ ଯାଇ ପାରୁ ନ ଥିଲେ ।

(ଗ) ଏ ମହାଦେଶର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ, ଯେଉଁଠାରେ ମରୁଭୂମି ନାହିଁ, ମଧ୍ୟଭାଗକୁ ଯିବାର କୌଣସି ଉପାୟ ନ ଥିଲା । ମାନଚିତ୍ରରୁ ବୁଝି ପାରୁଛ; ସମୁଦ୍ରର କୌଣସି ଭାଗ ଆଫ୍ରିକାର ମଧ୍ୟସ୍ଥଳ ପର୍ଯ୍ୟନ୍ତ ବିସ୍ତୃତ ହୋଇ ନାହିଁ । ଏଠାରେ ଗଙ୍ଗା, ୟଙ୍ଗ୍‌ସିକିଅଙ୍ଗ୍ ବା ରାଇନ୍ ପରି ସହଜ-ନାବ୍ୟ ନଦୀ ନାହିଁ । ଆଫ୍ରିକାର ପ୍ରାୟ ସମସ୍ତ ନଦୀରେ ଅନେକ ପାହାଡ଼, ବଡ଼ ବଡ଼ ପଥର ଓ ଜଳପ୍ରପାତ (**Cataract or waterfall**) ଦେଖାଯାଏ—ଅନେକ ସ୍ଥାନରେ ନଦୀ ସବୁ ପାହାଡ଼ ଉପରୁ କ୍ରମୋନ୍ନତ ଗିରିପଥରେ ପ୍ରଚଣ୍ଡ ଗତିରେ ତଳକୁ ଖସେ । ଏ ସବୁ ସ୍ଥାନରେ ନଦୀ ଏପରି ପ୍ରବଳ ବେଗରେ

ବହି ଥାଏ ଯେ, ସେଠାରେ କୁଣ୍ଠା ଖଣ୍ଡିଏ ପକାଇଲେ ଦ୍ୱ ଦ୍'ଖଣ୍ଡ ହୋଇ ଯାଇପାରେ । କେଉଁ ନୌକା, ଜାହାଜ ବା ଏହି ଭୟଙ୍କର ଜଳପ୍ରପାତ ପାର ହୋଇ ଆଫ୍ରିକାର ମଧ୍ୟସ୍ଥାନକୁ ଯାଇ ପାରିବ ?

(ଘ) ଆଫ୍ରିକା-ଉପକୂଳର କେତେକ ଭାଗ ମରୁଭୂମି, ଅନ୍ଧକାର— ଏଠାରେ ଖାଦ୍ୟ ଓ ଜଳ ମିଳେ ନାହିଁ । ଉପକୂଳରେ ଅନେକ ଫଳବନ୍ତ ଭାଗର ଜଳବାୟୁ ଦୂଷିତ । ଅତଏବ ବିଦେଶୀମାନେ ଆଗେ ଆଗେ ଆଫ୍ରିକା-ଉପକୂଳରେ ପାଦ ଦେବାକୁ ଡରୁଥିଲେ ।

(ଙ) ଏଠାର ଲୋକେ ବଡ଼ ଅସଭ୍ୟ ଥିଲେ—ନିଜ ଦେଶରେ ବିଦେଶୀମାନଙ୍କୁ ଦେଖିବାକୁ ଆଦୌ ଇଚ୍ଛା କରୁ ନ ଥିଲେ ।

(ଚ) ଆଫ୍ରିକାର ମଧ୍ୟ-ଭାଗରେ ପ୍ରବେଶ କଲେ ମଧ୍ୟ, ସଡ଼କ ଅଭାବରେ, ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଇ ହେଉ ନ ଥିଲା ।

ଏ ସମସ୍ତ କାରଣରୁ ବୋଧହୁଏ ଅନ୍ୟାନ୍ୟ ମହାଦେଶର ଲୋକେ ଆଫ୍ରିକା ଭିତରକୁ ଯାଇ ପାରୁ ନ ଥିଲେ—ଫଳରେ, ମହାଦେଶଟି ଅନେକ ଦିନ ଅଜଣା, ଅଜାଣିଆ ହୋଇ ପଡ଼ି ଥିଲା ।

**ଆଫ୍ରିକାର ସ୍ଥିତି (position):—**

ଆଫ୍ରିକା ପ୍ରାଚୀନ ପୃଥିବୀର ଭୂମିଖଣ୍ଡର ଦକ୍ଷିଣଭାଗ । ଆକୃତିରେ ଏହା ୟୁରୋପଠାରୁ ତିନି ଗୁଣ ବଡ଼ । ଏହି ବିଶାଳ ମହାଦେଶଟି ବିଷୁବରେଖାର ଉଭୟ ପାର୍ଶ୍ୱରେ ଅବସ୍ଥିତ । ଯେଉଁ ଲଘିମାରେ କାଶ୍ମୀର ପ୍ରଦେଶର ସୁଦୂର ଉତ୍ତରଭାଗ ଦେଖାଯାଏ, ଠିକ୍ ସେଇ ଲଘିମାରେ ଆଫ୍ରିକାର ଅତି ଉତ୍ତର ଭାଗଟି ଅବସ୍ଥିତ । ବିଷୁବରେଖାର ଦକ୍ଷିଣରେ ମଧ୍ୟ ଠିକ୍ ସେଇ ଲଘିମା ପର୍ଯ୍ୟନ୍ତ ଆଫ୍ରିକାର ସୁଦୂର ଦକ୍ଷିଣାଂଶଟି ବିସ୍ତୃତ । ଏ ମହାଦେଶ ସୁବିସ୍ତୃତ ଭୂମଧ୍ୟସାଗର ଦ୍ୱାରା ୟୁରୋପଠାରୁ, ସଂକୀର୍ଣ୍ଣ ଲୋହିତସାଗର ଦ୍ୱାରା ଏସିଆଠାରୁ ବିଚ୍ଛିନ୍ନ ହୋଇଅଛି । ଏହାର

ଉପକୂଳ-ସୀମା (Coast-line) ୟୁରୋପ ବା ଏସିଆର ଉପକୂଳ ଅପେକ୍ଷା କମ୍ ଭଙ୍ଗା, କମ୍ ବଙ୍କା । ଏହାର ପଶ୍ଚିମଭାଗରେ ବୃହତ୍ ଗିନି ଉପସାଗର (Gulf of Guinea); ଉତ୍ତର ଭାଗରେ ତ୍ରିପୋଲି (Tripoli) ଉପସାଗର ଏବଂ ପୂର୍ବ ଭାଗରେ ଏଡେନ୍ ଉପସାଗର । ମାଡାଗାସ୍କାର୍ ଏଠାର ଏକ ମାତ୍ର ବୃହତ୍ ଦ୍ୱୀପ ।

ପ୍ରଶ୍ନ:— ଆଫ୍ରିକାକୁ "କୃଷ୍ଣ ବା ଅନ୍ଧକାରମୟ ମହାଦେଶ" କହାଯାଏ କାହିଁକି ?

ଆଗେ ଅନ୍ୟାନ୍ୟ ମହାଦେଶର ଲୋକେ ଏ ମହାଦେଶର ମଧ୍ୟଭାଗରେ ପ୍ରବେଶ କରିପାରୁ ନ ଥିଲେ କେଉଁ କାରଣରୁ ? ଆଫ୍ରିକାର ସ୍ଥିତି ନିର୍ଦ୍ଦେଶ କର ।



## ୨ ଆଫ୍ରିକାର ଉପରିଭାଗ

ୟୁରେସିଆ ଓ ଆଫ୍ରିକାର ଗଠନରେ ବୈସାଦୃଶ୍ୟ ଦେଖାଯାଏ । ୟୁରୋପ ଓ ଏସିଆର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ଉଚ୍ଚଭୂମି ବିସ୍ତୃତ । ଆଫ୍ରିକାରେ କିନ୍ତୁ ଅତ୍ୟଳ୍ପ ବଡ଼ ପର୍ବତଶ୍ରେଣୀ ଦେଖାଯାଏ । ଅନ୍ୟାନ୍ୟ ମହାଦେଶ ପରି ଏଠାରେ ନିମ୍ନଭୂମି ନାହିଁ । ଏ ମହାଦେଶର ଅଧିକାଂଶ ଦାକ୍ଷିଣାତ୍ୟ (Deccan) ଠାରୁ ଉଚ୍ଚ । ମାନଚିତ୍ରରୁ ବୁଝି ପାରୁଛ, ଆଫ୍ରିକା ବାସ୍ତବରେ ଗୋଟିଏ ପ୍ରକାଣ୍ଡ ମାଳଭୂମି । ପ୍ରାୟ ପ୍ରତ୍ୟେକ ଅଞ୍ଚଳରେ, ମାଳଭୂମିର ପ୍ରାନ୍ତ (Edge) ଉପକୂଳକୁ ପ୍ରାୟ ଲାଗି ରହିଅଛି । ଏହି ମାଳଭୂମି-ପ୍ରାନ୍ତ ସବୁ ଆଫ୍ରିକାର ମଧ୍ୟଭାଗ ଅପେକ୍ଷା ଉଚ୍ଚତର । ଦକ୍ଷିଣାର୍ଦ୍ଧର ମାଳଭୂମି ଉତ୍ତରାର୍ଦ୍ଧର ମାଳଭୂମିଠାରୁ ଅଧିକ ଉଚ୍ଚ । ଲୋହିତସାଗରର ମଧ୍ୟଭାଗରୁ ନାଇଜେର୍ (Niger) ନଦୀ-ମୁହାଣ ଯାଏଁ ଗୋଟିଏ ରେଖା ଟାଣି ଦେଖିବ ଯେ, ଏ ରେଖାର

ଦକ୍ଷିଣରେ ଥିବା ସମସ୍ତ ଭାଗ (କଙ୍ଗୋ-ଅବବାହିକା ବ୍ୟତୀତ) ଗୋଟିଏ ଉଚ୍ଚ ମାଳଭୂମି ଏବଂ ଏ ରେଖାର ଉତ୍ତର ଭାଗଟି ଗୋଟିଏ ଅନୁଚ୍ଚ ମାଳଭୂମି । ଲୋହିତସାଗରର ମଧ୍ୟଭାଗରୁ ଆଫ୍ରିକାର ଠିକ୍ ଦକ୍ଷିଣପ୍ରାନ୍ତ ପର୍ଯ୍ୟନ୍ତ ଏକ ଉଚ୍ଚଭୂମିମାଳା ବିସ୍ତୃତ ହୋଇଅଛି । ଏହା ହିମାଳୟ ଭଳି ଏକ ଦୀର୍ଘ ଗିରିଶ୍ରେଣୀ ନୁହେ—ଅଭ୍ୟୁଚ୍ଚ ମାଳଭୂମିର ଏହା ଗୋଟିଏ ଅଂଶ ମାତ୍ର । ଲୋହିତସାଗର ନିକଟରେ ଅଗ୍ନେୟଗିରିପୂର୍ଣ୍ଣ ଆବିସିନିଆନ୍ (Abyssinian) ପର୍ବତମାଳା—ପଶ୍ଚିମଘାଟ ଠାରୁ ତିନି ଗୁଣ ଉଚ୍ଚ । ଭିକ୍ଟୋରିଆ ହ୍ରଦ ଚତୁର୍ଦ୍ଦିଗରେ, ଏହି ମାଳଭୂମିର ଦଉଟି ଉଚ୍ଚତମ ଶୃଙ୍ଗ—Kenya (୧୮୦୦୦ ଫୁଟ୍ ଉଚ୍ଚ) ଓ Kilimanjaro (୧୮୭୦୦ ଫୁଟ୍) ଦେଖାଯାଏ । ବିଷୁବରେଖାର ଖୁବ୍ ନିକଟରେ ଥିଲେ ମଧ୍ୟ ଏ ଦୁଇ ଶୃଙ୍ଗର ଉପରିଭାଗ ସର୍ବଦା ବରଫାଚ୍ଛନ୍ନ ରହେ । ଆଫ୍ରିକାର ଦକ୍ଷିଣ ଓ ପୂର୍ବୋପକୂଳରେ ମଧ୍ୟ ପର୍ବତ ଦେଖାଯାଏ ।

ଉପରୋକ୍ତ ରେଖାର ଉତ୍ତରଭାଗଟି ମଧ୍ୟ ଗୋଟିଏ ମାଳଭୂମି; ତେବେ ଏହା ଦକ୍ଷିଣଭାଗ ଠାରୁ ସାନ । ଦକ୍ଷିଣ-ପୂର୍ବରୁ ଉତ୍ତର-ପଶ୍ଚିମ ଯାଏଁ 'ଟିବେଷ୍ଟି' (Tibesti) ଉଚ୍ଚଭୂମି ବିସ୍ତୃତ । ଗିନି ଉପସାଗରର ଉତ୍ତର ଉପକୂଳରେ ଆଉ ଗୋଟିଏ ଉଚ୍ଚଭୂମି । ଆଫ୍ରିକାର ଉତ୍ତର-ପଶ୍ଚିମ କୋଣରେ ତୁଷାରାବୃତ ଆଟ୍‌ଲାସ୍ ପର୍ବତ । ଏହା ମଧ୍ୟ ପଶ୍ଚିମଘାଟ-ଠାରୁ ତିନି ଗୁଣ ଉଚ୍ଚ । ଆଫ୍ରିକାର ଉପକୂଳରେ ଯେଉଁ ସମସ୍ତ ସମତଳ ପ୍ରଦେଶ ଦେଖାଯାଏ, ତାହା ଅତି ଦୀର୍ଘ ଓ ସଂକୀର୍ଣ୍ଣ ।

ସାହାରା ମରୁଭୂମି:—

ଏହା ପୃଥିବୀର ବୃହତ୍ତମ ମରୁଭୂମି—ଅତି ପ୍ରକାଣ୍ଡ, ଶୁଷ୍କ ଓ ଗରମ । ଏ ମରୁଭୂମି ବାଲୁକାପୂର୍ଣ୍ଣ ଓ ପ୍ରସ୍ତରମୟ ସମତଳ ଏବଂ ଶିଳାମୟ ମାଳଭୂମିରେ ପୂର୍ଣ୍ଣ । ସ୍ଥାନେ ସ୍ଥାନେ ବଡ, ସାନ ଅନେକ ଝରଣା ଓ ମରୂଦ୍ୟାନ (oases) ଦେଖାଯାଏ । ଏଠା ମରୂଦ୍ୟାନ-ପଙ୍କ୍ତି-

ଘୋଡ଼ାଙ୍କର ଚରୁବାଗରେ ଖଜୁରି ଫଳେ, ଓଟ ପାଇଁ ଘାସ ଜନ୍ମେ । ଖଜୁରି ଏଠାର ପ୍ରଧାନ ଖାଦ୍ୟ—ଅଳ୍ପ ଜଉା ବ ଉତ୍ପନ୍ନ ହୁଏ । ଏହା ଛଡ଼ା, ଏଠାରେ ଲବଣ, ଓଟପକ୍ଷିର ପର (Ostrich-feathers) ଓ ସ୍ୱର୍ଣ୍ଣଧୂଳ ମଧ ମିଳେ । ଅରବ-ଉଷ୍ଟ୍ରଯାତ୍ରିଦଳ ଏ ମରୁଭୂମିରେ ଯାଇ ବାଣିଜ୍ୟ କରଥାନ୍ତି । ଏଠା ଅରବମାନଙ୍କର ପ୍ରଧାନ ସଂପଦ ହେଉଛି ଓଟ ଓ ଖଜୁରି ।

ଅକୃତରେ, ସାହାରା ଭାରତଠାରୁ ପ୍ରାୟ ହୁଇ ଗୁଣ ବଡ଼ । ଏଠାରେ କେବେ କେବେ ଅତ୍ୟଳ୍ପ ମାତ୍ର ବୃଷ୍ଟି ହୋଇଥାଏ ଏବ ଏହ ସାମାନ୍ୟ ବର୍ଷା ଜଳ ପ୍ରଖର ସୂର୍ଯ୍ୟ-କରଣରେ ନକେଉଁଅଡେ ଉଡ଼ିଯାଏ । ସାହାରାର ଅଧିକ ଭାଗ ସମୁଦ୍ରଠାରୁ ବହୁ ଦୂରରେ ଥିବାରୁ, ତାହା ଦନବେଳେ ଅତ୍ୟନ୍ତ ଗରମ ଏବଂ ରାତିବେଳେ ଖୁବ୍ ଥଣ୍ଡା ରହେ । ପ୍ରତ୍ୟହ ଏପର ଆକସ୍ମିକ ପରବର୍ତ୍ତନ ଘଟିବା ଫଳରେ, ଏଠାର ପାହାଡ଼ ବା ପଥର ସବୁ ଫାଟି ଯାଏ । ଏଣୁ ସେ ସବୁ ହଜାର ହଜାର ବର୍ଷ ହେଲା ବରାବର କ୍ଷୟପ୍ରାପ୍ତ, ବାଲି-ଧୂଳରେ ପରଣତ ହୋଇ ଆସୁଛି । ଏଠାରେ ପ୍ରବଳ, ଭୟଙ୍କର ଉଡ୍ଡୀୟମାନ-ବାଲୁକା-ମେଘ (Sand-storms) ଉଠିଥାଏ—ଏଥିରେ ବ ଅନେକ ପଥର ଚୂର୍ଣ୍ଣ ହୋଇ ପଡେ ।

ପ୍ରଶ୍ନ:—ଆଫ୍ରିକାର ଉପରଭାଗ ସମ୍ବନ୍ଧରେ କଣ ଜାଣ ?

ସାହାରା ମରୁଭୂମିରେ କ କ ପଦାର୍ଥ ମିଳେ ?

——:*:——

# ୩ ଜଳନିଷ୍କାଶ: ନଦୀ

## ୧ ନୀଳ ନଦୀ (The Nile):—

ଏହା ହେଉଛି ପୃଥିବୀର ଦ୍ୱିତୀୟ ଦୀର୍ଘତମ ନଦୀ । ବିଷୁବରେଖା-ସ୍ଥିତ **ଭିକ୍ଟୋରିଆ** ନ୍ୟାଞ୍ଜା ହ୍ରଦରେ ଏହାର ଉତ୍ପତ୍ତି । ଏହା ଏହି ହ୍ରଦରେ ଜାତ ହୋଇ ଆଲବର୍ଟ ନ୍ୟାଞ୍ଜାରେ ପ୍ରବେଶ କରେ ଏବଂ ଏଡଉଆର୍ଡ଼ ନ୍ୟାଞ୍ଜାର ଉଦ୍‌ବୃତ୍ତ (Surplus) ଜଳ ପ୍ରାପ୍ତ ହୋଇ ଉତ୍ତର ଦିଗରେ ନୁବିଆ ଓ ମିଶର ଦେଶ ମଧ୍ୟରେ ବହି ଯାଇ ଭୂମଧ୍ୟ ସାଗରରେ ମିଶେ । ଏ ନଦୀର ମୁହାଣ ଖୁବ୍ ଫଳବତୀ । ପ୍ରତି ବର୍ଷ ମୌସୁମି-ଋତୁରେ ଆବିସିନିଆର ପର୍ବତମାଳା ଉପରେ ପ୍ରବଳ ବର୍ଷା ହେବାକ୍ଷଣି, କେତୋଟି ଛୋଟ ନଦୀ ଏଠାର ପାଣି ନେଇ ନୀଳକୁ ଯୋଗାଏ; ଫଳରେ ନୀଳରେ ଭୟଙ୍କର ବନ୍ୟା ହୁଏ । ଏ ନଦୀର ବାର୍ଷିକ ବନ୍ୟା ଯୋଗେ ମିଶର ଦେଶ ଯଥେଷ୍ଟ କାଦୁଅ ପାଇ ବେଶ ଉର୍ବର ହୋଇଥାଏ । ଡାହାଣ ପଖାରେ ଯେଉଁ ନଦୀଗୁଡ଼ିକ ନୀଳକୁ ଜଳ ଯୋଗାଏ, ସେ ଗୁଡ଼ିକ ମଧ୍ୟରେ ୧ ନୀଳ ବା କର୍ଦ୍ଦମଗର୍ଭନୀଳ (The Blue or muddy Nile) ଓ ୨ ଆଟବର (Atbara) ଅତି ପ୍ରଧାନ । ଏ ଦୁଇଟି ନଦୀ ଏବଂ ବାମ ପାର୍ଶ୍ୱର ବାରେଲ୍-ଘାଜେଲ୍ (Bahr-el Ghazel) ନୀଳନଦୀର ଉପନଦୀ ବା ସରବରାହକାରୀ ନଦୀ (tri butaries or feeders). ମିଶର ଦେଶକୁ "ନୀଳନଦୀର ଦାନ" (The gift of the Nile) ବୋଲାଯାଏ । ମିଶରବାସିମାନେ ଏ ନଦୀକୁ ଈଶ୍ୱର ଜ୍ଞାନ କରୁଥାନ୍ତି । ନୀଳ ନଦୀତଟରେ ଖାର୍ତ୍ତୁମ୍, କେଁରୋ, ଆଲେକ୍‌ଜାଣ୍ଡ୍ରିଆ ଓ ପୋର୍ଟସେଡ୍ ଅବସ୍ଥିତ । ଏ ନଦୀରେ ଛ'ଗୋଟି ବୃହତ୍ ଜଳପ୍ରପାତ ଦେଖାଯାଏ । ଏ ସମସ୍ତ ଜଳପ୍ରପାତ ମଧ୍ୟରେ ନୌକା ଓ ଷ୍ଟିମର ଜାହାଜ ଯା ଆସ କରେ ।

୨ କଙ୍ଗୋନଦୀ (The Congo):—

ଏହା ପୃଥିବୀର ଅନ୍ୟତମ ଅତିଜଳପୂର୍ଣ୍ଣ (Fullest) ନଦୀ— ଅନ୍ୟାନ୍ୟ ନଦୀ ଅପେକ୍ଷା (ଅବଶ୍ୟ ଆମେଜାନ୍ ବ୍ୟତୀତ) ଏହା ଅଧିକ ଜଳ ଧରି ଚାଲେ । ଏହା ଦୁଇ ଥର ବିଷୁବରେଖା ପାର ହୁଏ । ନୀଲ ନଦୀ ପରି, ଏହା ମଧ୍ୟ ଉଚ୍ଚମାଳଭୂମିସ୍ଥିତ ତିନି ଗୋଟି ହ୍ରଦର ଜଳ ବହି ନିଏ । ଏହାର ଉଭୟ ପାର୍ଶ୍ୱରେ ବଡ଼ ବଡ଼ ଅନେକ ପୋଷକ-ନଦୀ (Feeders) ଦେଖାଯାଏ । ଏଗୁଡ଼ିକ ମଧ୍ୟରୁ କେତୋଟି ନର୍ମଦା ଓ ଗୋଦାବରୀ ପରି ବଡ଼ । ଏ ନଦୀରେ ପ୍ରାୟ ୨୦୦ ମାଇଲ ବାଟ ଭୟଙ୍କର ଜଳପ୍ରପାତ ଦେଖାଯାଏ, କିନ୍ତୁ ୧୦୦୦ ମାଇଲ ନୌକା ଓ ନଦୀ-ଜାହାଜ ଯାଇ ପାରେ । କଙ୍ଗୋ ନଦୀ ବାଙ୍ଗୱେଲୋ (Bangewolo) ହ୍ରଦରୁ ଜାତ ହୋଇ ଆଟ୍ଲାଣ୍ଟିକ୍ ମହାସାଗରରେ ଯାଇ ପଡ଼େ ।

୩ ନାଇଗେର୍ ନଦୀ (The Niger):—

ଏହା କଙ୍ଗ୍ ପର୍ବତରେ ଜନ୍ମି, ସୁଦାନ (Soudan) ଓ ଗିନି ମଧ୍ୟରେ ବହି ଗିନି ଉପସାଗରରେ ଯାଇ ମିଳିତ ହୁଏ । ବେନୁ (Benue) ଏହାର ବୃହତ୍ତମ ଉପନଦୀ । ଆଫ୍ରିକାର ଅନ୍ୟାନ୍ୟ ନଦୀ ପରି, ଏ ନଦୀରେ ମଧ୍ୟ ପ୍ରଖରବେଗ (rapids) ଯୋଗେ ନୌକା, ଜାହାଜ ଯାଇ ପାରେ ନାହିଁ ।

୪ ଜାମ୍ବେସି ନଦୀ (The Zambesi):—

ଏହା ଉଚ୍ଚଭୂମିରେ ଜାତ ହୋଇ ଦକ୍ଷିଣ-ଆଫ୍ରିକା ମଧ୍ୟରେ ବହି ଯାଏ ଏବଂ ଭାରତମହାସାଗର-ଶାଖା ମୋଜାମ୍ବିକ୍ ପ୍ରଣାଳୀରେ (Mojambique Channel) ପଡ଼େ । ଏହାର ଉତ୍ପତ୍ତିସ୍ଥାନ ଓ ମୁହାଣ ମଧ୍ୟବର୍ତ୍ତୀ ପ୍ରାୟ ଅର୍ଦ୍ଧ ପଥରେ ଏ ନଦୀର ଜଳ ୨୫୦ ଫୁଟ ଉଚ୍ଚ ଏକ ଉଦ୍‌ଗତ ପାହାଡ଼ ଉପରୁ ଏପରି ଭୀଷଣ ବେଗରେ ଖସେ

ଯେ, ପ୍ରପାତର ଗର୍ଜ୍ଜନ-ଧ୍ୱନି ବହୁ ମାଇଲ ଯାଏ ଶୁଭେ ଏବଂ ଫେନିଲ ନଦୀ ଉପରେ ଜଳକଣାସବୁ ବଡ଼ ବଡ଼ ସ୍ତମ୍ଭାକାରରେ ଉଠିଥାଏ । ଏହାର ନାମ 'ଭିକ୍ଟୋରିଆ ପ୍ରପାତ' (Victoria Falls). ଏହା ଆଫ୍ରିକାର ଗୋଟିଏ ଅତ୍ୟାଶ୍ଚର୍ଯ୍ୟ ଦୃଶ୍ୟ । ସେଠାର ଲୋକେ ଏହାକୁ 'ଶବ୍ଦାୟମାନ ବାଷ୍ପ ବା କୁହେଳିକା' (The Sounding Smoke) ଆଖ୍ୟା ଦେଇଛନ୍ତି । Shire ଜାମ୍ବେସିର ସର୍ବପ୍ରଧାନ ଉପନଦୀ । ଜାମ୍ବେସି, ଗୋଟିଏ ବଡ଼ ନଦୀ ହେଲେହେଁ, ଗଙ୍ଗା ବା ଐରାବତୀ ପରି ପୋତପରିଚାଳନର ଉପଯୋଗୀ ନୁହେ । କାରଣ, ଏଥିରେ ଓ ଏହାର ଉପନଦୀରେ ଅନେକ ଅତ୍ୟୁଗ୍ରବେଗ (rapids) ଓ ପରିବର୍ତ୍ତନଶୀଳ ବାଲୁକାସ୍ତୂପ ଦେଖାଯାଏ ।

ଆଫ୍ରିକାର ଅନ୍ୟ ଦୁଇଟି ପ୍ରଧାନ ନଦୀ:— ଲିମ୍ପୋପୋ ବା କୁମ୍ଭୀର ନଦୀ (The Limpopo or Crocodile river); ଅରେଞ୍ଜନଦୀ (The Orange) । ଲିମ୍ପୋପୋଟି କୁମ୍ଭୀରପୂର୍ଣ୍ଣ । ସମୁଦ୍ରୋପକୂଳ ନିକଟରେ ନୀଳ, କଙ୍ଗୋ, ନାଇଗେର୍ ଓ ଜାମ୍ବେସିର ଗତି ପ୍ରଖରବେଗଦ୍ୱାରା ବାଧାପ୍ରାପ୍ତ ହୋଇଥାଏ ।

କାସ୍ପିଅନ୍ ଓ ମୃତ (Dead) ସାଗର ପରି, ସାଦ ହ୍ରଦ (Lake Tsad or Chad) ଅଭ୍ୟନ୍ତରୀଣ ଜଳନିକାଶର (Inland drainage) କେନ୍ଦ୍ର । ବର୍ଷା ଦିନେ କେତୋଟି ଦୀର୍ଘ ନଦୀ ଏ ହ୍ରଦରେ ପ୍ରବେଶ କରେ ଏବଂ ନଦୀ-ଜଳ ପାଇ ଏହା ଖୁବ୍ ଫୁଲି ଉଠେ । ଖରା ଦିନେ ହ୍ରଦଟି ଏକ ଜଳାଭୂମିରେ (Marsh) ପରିଣତ ହୁଏ ।

ପ୍ରଶ୍ନ:— ମିଶରଦେଶର ଉର୍ବରତାର କାରଣ କଣ ?

ଆଫ୍ରିକାର ନଦୀ ସବୁ ସାଧାରଣତଃ ନାବ୍ୟ ନୁହେ କାହିଁକି ?

'ଭିକ୍ଟୋରିଆ-ପ୍ରପାତ' ସମ୍ବନ୍ଧରେ କଣ ଜାଣ ?

## ୪ ଆବିଷ୍କାର, ଲୋକ ଓ ରାଜନୈତିକ ବିଭାଗ

କେଉଁ କେଉଁ କାରଣରୁ ଅନ୍ୟାନ୍ୟ ମହାଦେଶର ଲୋକେ ଆଫ୍ରିକାର ମଧ୍ୟଭାଗରେ ଅନେକ ଦିନ ଯାଏଁ ପ୍ରବେଶ କରି ପାରୁ ନ ଥିଲେ, ତାହା ପ୍ରଥମ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି । ଶହେ ବର୍ଷ ତଳେ ଜଗତ-ବାସିମାନେ ଏ ମହାଦେଶର ମଧ୍ୟଭାଗ ସମ୍ବନ୍ଧରେ କିଛି ଜାଣି ନ ଥିଲେ । ଆଫ୍ରିକାର ଲୋକମାନେ ଅନ୍ୟାନ୍ୟ ମହାଦେଶକୁ ଯାଇ ପାରୁ ନ ଥିଲେ । କିନ୍ତୁ ୟୁରୋପୀୟ ଓ କେତେକ ଭାରତୀୟ ପର୍ଯ୍ୟଟକ କ୍ରମଶଃ ଆଫ୍ରିକାର ମଧ୍ୟଭାଗ ଆବିଷ୍କାର କରିବାକୁ ଲାଗିଲେ । କଙ୍ଗୋ ଓ ନୀଳନଦୀ ମାର୍ଗରେ ସେମାନେ ଏହି କାର୍ଯ୍ୟ କରିବାକୁ ସମର୍ଥ ହେଲେ । ସମୁଦ୍ରଆଡ଼ୁ ଏ ଦୁଇ ନଦୀରେ ଯାତ୍ରା କରିବା ଅବଶ୍ୟ କଠିନ ଥିଲା; ତେବେ ଏ ଦୁଇ ନଦୀର ଉର୍ଦ୍ଧ୍ୱଗତିରେ ନୌକା ଓ ଛୋଟ ଛୋଟ ଜାହାଜ ଯା ଆସ କରି ପାରୁଥିଲା । ଊନବିଂଶ ଶତାବ୍ଦୀରେ ଲିଭିଂଷ୍ଟୋନ୍, ବର୍ଟନ୍, ସ୍ପିକ୍, ବେକର୍, କାମେରନ୍, ଷ୍ଟାନ୍‌ଲି ପ୍ରମୁଖ ପର୍ଯ୍ୟଟକଗଣ ଆଫ୍ରିକାର ମଧ୍ୟଭାଗ ଆବିଷ୍କାର କଲେ ଏବଂ ସେଥି ପ୍ରତି ଜଗତବାସିଙ୍କର ଦୃଷ୍ଟି ଆକୃଷ୍ଟ କଲେ । ୟୁରୋପୀୟମାନଙ୍କ ମଧ୍ୟରେ ପୋର୍ତ୍ତୁଗୀଜ୍‌ଜାତି ସର୍ବପ୍ରଥମରେ ଆଫ୍ରିକାର ଉପକୂଳ ପ୍ରଦେଶ ଆବିଷ୍କାର କରିଥିଲେ ।

ଆଜକୁ ପ୍ରାୟ ୬୦ ବର୍ଷ ହେଲା ଜଗତବାସିମାନେ ଆଫ୍ରିକା ସମ୍ବନ୍ଧରେ ବେଶି ଖବର ରଖି ଆସୁଛନ୍ତି । ତଥାପି ବର୍ତ୍ତମାନ ଏ ମହା-ଦେଶର ଏପରି ଅନେକ ସ୍ଥାନ ଅଛି, ଯାହା ବିଷୟରେ ଆମ୍ଭେ କିଛି ଜାଣି ପାରି ନାହିଁ । ଆବିଷ୍କାର କାମ ବରାବର ଚାଲିଛି କହିଲେ ଚଳେ । ବ୍ରିଟିଶ୍ ଜାତି Cape of Good Hopeର ଉତ୍ତର ଭାଗରେ କ୍ରମଶଃ ସାମ୍ରାଜ୍ୟବିସ୍ତାର କରି ଯାଉଛନ୍ତି । କଙ୍ଗୋ ନଦୀ ପର୍ଯ୍ୟନ୍ତ ଅନେକ ବାଣିଜ୍ୟ-କେନ୍ଦ୍ର ଖୋଲା ହେଲାଣି । ବର୍ତ୍ତମାନ ମଧ୍ୟ ଅନେକ ଶିକାରି, ବେପାରି ଓ ପାଦ୍ରି ଆଫ୍ରିକାରେ ଯାଇ ନୂତନ ନୂତନ ସ୍ଥାନ ଆବିଷ୍କାର

କରୁଛନ୍ତି । ଆଶା ହୁଏ, ଆଉ ଅଳ୍ପ ଦିନ ପରେ ସମଗ୍ର ମଧ୍ୟ ଆଫ୍ରିକା ସଂପୂର୍ଣ୍ଣରୂପେ ଅବଷ୍ଟ୍ରିତ ହେବ, ତାହା ବାଣିଜ୍ୟର ପ୍ରଧାନ କେନ୍ଦ୍ର ହୋଇ ଉଠିବ । ବର୍ତ୍ତମାନ ପ୍ରାୟ ସମଗ୍ର ଆଫ୍ରିକା ବିଭିନ୍ନ ୟୁରୋପୀୟ ଜାତି ଦ୍ୱାରା ଶାସିତ । ଏଠାର ଲୋକେ ଅଳ୍ପେ ଅଳ୍ପେ ସଭ୍ୟ, ଶିକ୍ଷିତ ହୋଇ ଆସୁଛନ୍ତି । ଆଜି କାଲି ସେମାନେ ବାଣିଜ୍ୟ ବ୍ୟବସାୟ ଚଳାଇବାର ବେଶ୍ ଶିଖିଲେଣି । ବିଭିନ୍ନ ୟୁରୋପୀୟ ଜାତି ଛଡ଼ା, ଅନେକ ଭାରତୀୟ ମଧ୍ୟ ଆଫ୍ରିକାରେ ଏବେ ବାସ କରୁଅଛନ୍ତି । ଜଣେ ପ୍ରସିଦ୍ଧ ଭାରତବାସୀ ସେଠାରେ ଉଚ୍ଚରାଜକର୍ମଚାରୀ ପଦରେ ନିଯୁକ୍ତ ହୋଇଅଛନ୍ତି ।

ଲୋକ:—

ଆଫ୍ରିକାର ଅନେକ ଭାଗ—ପ୍ରଧାନତଃ ମଧ୍ୟଭାଗ, ସୁଦାନ ଓ ଗିନି—ନିଗ୍ରୋଜାତିଦ୍ୱାରା ଅଧ୍ୟୁଷିତ । ନିଗ୍ରୋଜାତି ଅନେକ ଶାଖାରେ ବିଭକ୍ତ । ଏମାନଙ୍କର କୌଣସି ଧର୍ମ ବା ମତ ନାହିଁ କହିଲେ ଚଳେ । ଏମାନେ ଭୂତପ୍ରେତର ଆରାଧନା କରିଥାନ୍ତି । ଅନେକ ନିଗ୍ରୋ ମୁସଲମାନଧର୍ମରେ ଦୀକ୍ଷିତ—କେତେକ ଜଣ ମାତ୍ର ଖ୍ରୀଷ୍ଟିଆନ୍ । କଙ୍ଗୋ-ଜଙ୍ଗଲର ସ୍ଥାନେ ସ୍ଥାନେ ବାମନ ଜାତି (Pygmy) ଦେଖାଯାନ୍ତି । ଏମାନଙ୍କ ମଧ୍ୟରେ ବଡ଼ ଲମ୍ବା ବା ଉଚ୍ଚ ମନୁଷ୍ୟର ଉଚ୍ଚତା ୪ ଫୁଟ ୬ ଇଞ୍ଚରୁ ଅଧିକ ନୁହେ । ଉତ୍ତର ଆଫ୍ରିକାରେ ଶୁକ୍ଳଜାତିର ଦୁଇ ଶାଖା (Semites and Hamites) ବାସ କରନ୍ତି । ଏମାନେ ପ୍ରଥମରେ ଏସିଆରୁ ଯାଇଥିଲେ । ଏ ଦୁଇ ଶାଖା ବିଭିନ୍ନ ଶ୍ରେଣୀରେ ବିଭକ୍ତ । ଏ ଦୁଇ ଶାଖାର ସମସ୍ତ ଶ୍ରେଣୀ ମଧ୍ୟରେ ଅତି ପ୍ରଧାନ ଜାତି— ଆରବ; ମୁର୍ (Moors); ବେର୍‌ବେର୍ (Berbers); ବେଜା (Bejas); କୋପ୍ଟ୍ (Kopts); ଗାଲା (Gallas); ଅବିସିନିଅନ; ସୋମାଲି; ଟୁଅରେଗ (Tuareg); ନୁବିଅନ୍ (Nubians) । କୋପ୍ଟ୍

ଓ ବେଜାମାନେ ମିଶରବାସୀ । ମରୋକ୍କୋ, ଅଲ୍‌ଜିରିଅ, ଟ୍ୟୁନିସ୍ ଓ ତ୍ରିପୋଲିରେ ମୁର୍, ଆରବ ଓ ବେର୍‌ବେର୍‌ଜାତି ସକଳ ବାସ କରନ୍ତି । ଏମାନଙ୍କର ମତ ଇସ୍‌ଲାମ । ଦକ୍ଷିଣ ଆଫ୍ରିକାରେ ପ୍ରଧାନତଃ ବାଣ୍ଟୁ (Bantus); ବୁଶ୍‌ମେନ୍; ଜୁଲୁ ବା କାଫିର୍ (Zulus or Kafirs); ହଟେନ୍‌ଟୋଟ୍ (Hottentos) ଓ ବାସୁଟୋ (Basutos) ଜାତି ଦେଖାଯାନ୍ତି ।

ଆଫ୍ରିକାର ପ୍ରାୟ ସମସ୍ତ ଅଞ୍ଚଳ ପ୍ରାୟ ସମସ୍ତ ୟୁରୋପୀୟ ଦେଶ ଦ୍ୱାରା ଶାସିତ ହେଲେହେଁ, ସେଠାରେ ଅତ୍ୟଳ୍ପ ମାତ୍ର ୟୁରୋପୀୟ ବାସ କରନ୍ତି । ସେ ମହାଦେଶର ଜଳବାୟୁ ୟୁରୋପୀୟ ଲୋକମାନଙ୍କ ସ୍ୱାସ୍ଥ୍ୟର ଅନୁକୂଳ ବା ଉପଯୋଗୀ ନୁହେ । ତେବେ ସୁଦୂର ଦକ୍ଷିଣ ଭାଗରେ—ଦକ୍ଷିଣଆଫ୍ରିକାର ଶୀତଳ ଉପକୂଳପ୍ରଦେଶ ଓ ଉଚ୍ଚଭୂମିରେ ସେମାନେ ଘର କରି ରହିଛନ୍ତି । ସେଠାର ଅନେକ କୃଷକ ଡଚ୍ (Dutch) ଜାତିର ଅନ୍ତର୍ଗତ । ଆଫ୍ରିକାର ପୂର୍ବୋପକୂଳରେ କେତେକ ଭାରତୀୟ ଲୋକ ଅଛନ୍ତି । ଏ ଉପକୂଳର ସକଳ ବନ୍ଦରରେ ପାର୍ସି, ପଠାଣ ଓ ହିନ୍ଦୁ ବଣିକମାନେ ଦେଖା ଯାନ୍ତି । ନେଟାଲ୍‌ରେ ଅନେକ ହିନ୍ଦୁ ବେପାରି, ଦୋକାନୀ ଓ ଉଦ୍ୟାନରକ୍ଷକ ହୋଇ ଜୀବିକା ନିର୍ବାହ କରନ୍ତି । ଆଉ କେତେକ ହିନ୍ଦୁ Kenya ଉପନିବେଶର ନୂତନ ଅଧିବାସୀ ହୋଇଅଛନ୍ତି ।

ରାଜନୈତିକବିଭାଗ:—

ମାନଚିତ୍ରରୁ ବୁଝି ପାରୁଛ, ଆଫ୍ରିକାର ଅଧିକ ଭାଗ ଗ୍ରେଟ୍‌ବ୍ରିଟେନ୍, ଫ୍ରାନ୍ସ ଓ ପୋର୍ତ୍ତୁଗଲ୍ ଦେଶର ଅଧୀନ । ୧୯୨୨ ସାଲ ପର୍ଯ୍ୟନ୍ତ ମିଶରଦେଶ ବ୍ରିଟିଶ୍ ସାମ୍ରାଜ୍ୟର ଏକ ଅଂଶ ଥିଲା; ସେଇ ବର୍ଷ କଲୁ ମିଶର ନିଜର ସ୍ୱାଧୀନତା ଘୋଷଣା କଲା ।

(କ) ବର୍ତ୍ତମାନ ଅଫ୍ରିକାର ବ୍ରିଟିଷ୍‌ଶାସିତ ସ୍ଥାନ:—

୧ ଅଙ୍ଗ୍ଲୋ-ଇଜିପ୍ସିଅନ୍ ସୁଦାନ ୨ ବ୍ରିଟିଷ୍-ପୂର୍ବ-ଅଫ୍ରିକା ବା କେନ୍ୟା ଉପନିବେଶ (Kenya Colony) ୩ ଟାଙ୍ଗାନିକା (Tanganyika) ୪ ବ୍ରିଟିଷ୍-ଦକ୍ଷିଣ-ଅଫ୍ରିକା ୫ ବ୍ରିଟିଷ୍-ପଶ୍ଚିମ-ଅଫ୍ରିକା (Nigeria, Gold Coast Colony, Sierra Leones Gambia) ୬ ସେଇଣ୍ଟ୍ ହେଲେନା ଦ୍ୱୀପ (St Helena). ୭ ଏସେନ୍‌ସନ୍ ଦ୍ୱୀପ (Ascension) ୮ ମାରିଷସ୍‌ଦ୍ୱୀପ ( Mauritius).

(ଖ) ଫରାସି-ଅଫ୍ରିକା:—

୧ ସାହାରା ୨ ଅଲ୍‌ଜିରିଆ ୩ ଟ୍ୟୁନିସ୍ ୪ ମାଡ଼ାଗାସ୍କାର୍ ଦ୍ୱୀପ ।

(ଗ) ପୋର୍ତ୍ତୁଗୀଜ୍-ଅଫ୍ରିକା:—

୧ ପୋର୍ତ୍ତୁଗୀଜ୍-ପଶ୍ଚିମ-ଅଫ୍ରିକା (Angola) ୨ ପୋର୍ତ୍ତୁଗୀଜ୍-ପୂର୍ବ-ଅଫ୍ରିକା ।

(ଘ) ସ୍ୱାଧୀନ ଅଫ୍ରିକା:—

୧ କଙ୍ଗୋ-ସ୍ୱାଧୀନରାଜ୍ୟ (The Congo Free State) ୨ ଅବିସିନିଆ. ୩ ମରୋକ୍କୋ—(ଫରାସି-ଅଧିକୃତରାଜ୍ୟ) । ୩ ଲିବେରିଆ ।

(ଙ) ଇଟାଲି-ଶାସିତ-ଅଫ୍ରିକା:—

୧ ସୋମାଲି ୨ ଲିବିଆ ୩ ଏରିଟ୍ରିଆ ।

ପ୍ରଶ୍ନ:— ଅଫ୍ରିକାର ମଧ୍ୟଭାଗ କିପରି ଅବିଷ୍କୃତ ହେଲା ?

ଅଫ୍ରିକାର ଅଧିକ ଭାଗ କେଉଁ କେଉଁ ଜାତି ଦ୍ୱାରା ଶାସିତ ?

ଅଫ୍ରିକାର ଲୋକମାନଙ୍କ ବିଷୟରେ କଣ ଜାଣ ?



## ୫ ଜଳବାୟୁ ଓ ଉଦ୍ଭିଦ୍‌ଜାତି

ଉତ୍ତର ଓ ଦକ୍ଷିଣରେ କେତୋଟି କ୍ଷୁଦ୍ର ଭାଗ ଛଡ଼ା, ଆଫ୍ରିକାର ପ୍ରାୟ ସମସ୍ତ ଭାଗ ଗ୍ରୀଷ୍ମମଣ୍ଡଳରେ ଅବସ୍ଥିତ । ଏହି ଗରମ ଭାଗଟି ବଡ଼ ଓସାର । ଆଫ୍ରିକାର ଅଧିକ ଅଂଶ ଯେପରି ଗ୍ରୀଷ୍ମମଣ୍ଡଳରେ ଅଛି, ଅନ୍ୟ କୌଣସି ମହାଦେଶରେ ସେପରି ନାହିଁ । ୟୁରୋପ କିମ୍ବା ଏସିଆର କୌଣସି ଅଂଶ ବିଷୁବରେଖାକୁ ସ୍ପର୍ଶ କରି ନାହିଁ । ଆଫ୍ରିକାର କୌଣସି ଅଞ୍ଚଳରେ କେବେହେଲେ ମଧ୍ୟାହ୍ନବେଳେ ସୂର୍ଯ୍ୟକିରଣ ବେଶି ବଙ୍କା ହୋଇ ପଡ଼େ ନାହିଁ । ଅତଏବ କୌଣସି ସ୍ଥାନ ଅତି ଶୀତଳ ନୁହେ— ଅଧିକାଂଶ ଅତି ଗରମ । ଉଚ୍ଚତମ ପର୍ବତର ଶୃଙ୍ଗରେ ମାତ୍ର ବରଫ ପଡ଼େ । ବିଷୁବରେଖା ନିକଟସ୍ଥ ସଂକୀର୍ଣ୍ଣ ନିମ୍ନ ଉପକୂଳ-ପ୍ରଦେଶରେ ସୂର୍ଯ୍ୟତାପ ପ୍ରଖର ହୋଇଥାଏ ।

ଲୋହିତସାଗରଠାରୁ ଆରମ୍ଭ କରି ଆଫ୍ରିକାର ପଶ୍ଚିମଭାଗ ପର୍ଯ୍ୟନ୍ତ ବର୍ଷା ହୁଏ ନାହିଁ—ଉଚ୍ଚ ଆଟ୍‌ଲାସ ପର୍ବତରେ ମାତ୍ର ହୋଇଥାଏ । ଏହି ଶୁଷ୍କ ଭାଗରେ ଉତ୍ତର-ପୂର୍ବ-ବାଣିଜ୍ୟବାୟୁ ବହେ । ସୁବିସ୍ତୃତ ସାହାରାରେ ସୂର୍ଯ୍ୟତାପ ଅତି ପ୍ରଖର । ଏଠାରେ ଯାହା କିଛି ବର୍ଷା ହୁଏ, ସୂର୍ଯ୍ୟ ତାହା ଅତି ଚଞ୍ଚଳ ଟାଣି ନିଏ । ଏ ମରୁଭୂମିରେ ଗୋଟିଏ ହେଲେ ନଦୀ ଜାତ ହୁଏ ନାହିଁ । ଆଫ୍ରିକାର ଦକ୍ଷିଣ-ପଶ୍ଚିମ କୋଣଟି ମଧ୍ୟ ଗୋଟିଏ ବହୁତ ଶୁଷ୍କ ଭାଗ; କାରଣ ଏଠାରେ ଭୂମିଆଡ଼ୁ ଦକ୍ଷିଣ-ପୂର୍ବ-ବାଣିଜ୍ୟ-ବାୟୁ ବହେ । ତେବେ ଏ ମହାଦେଶର ସମଗ୍ର ମଧ୍ୟ-ଭାଗରେ ବେର ବୃଷ୍ଟି ହୁଏ । ତୁମେମାନେ ଜାଣ, ସାଧାରଣତଃ ଖରା ଦିନେ ଭାରତରେ ବର୍ଷା ହୋଇଥାଏ । ଆଫ୍ରିକାରେ ବି ଏପରି ହୁଏ । କିନ୍ତୁ ବିଷୁବରେଖାର ଉଭୟ ପାର୍ଶ୍ୱରେ ଆଫ୍ରିକା ବିସ୍ତୃତ ଥିବାରୁ, ସେଠାରେ ବାସ୍ତବିକ ଦୁଇଟି ଗ୍ରୀଷ୍ମଋତୁ ହୋଇଥାଏ । ଆମ ଦେଶରେ ଗ୍ରୀଷ୍ମଋତୁ ହୋଇଥିବାବେଳେ ବିଷୁବରେଖାଉତ୍ତରସ୍ଥିତ ଆଫ୍ରିକାରେ

(ମୂର୍ଦ୍ଧ୍ୟମସ୍ତକୋପରି ରହିବାରୁ) ବେଶି ବୃଷ୍ଟି ହୁଏ । ଭାରତରେ ଶୀତଋତୁ ହେବାବେଳେ ବିଷୁବରେଖାଦକ୍ଷିଣସ୍ଥିତ ଆଫ୍ରିକାରେ ମଧ୍ୟ ସୂର୍ଯ୍ୟ ମସ୍ତକୋପରି ରହେ, ତେଣୁ ବର୍ଷା ହୁଏ । ଖରାଦିନେ, ଭାରତ-ମହାସାଗରର ଦକ୍ଷିଣ-ପୂର୍ବ (S. E) ବାଣିଜ୍ୟବାୟୁ ବିଷୁବରେଖା ପାର ହେବା ପରେ ଡାହାଣ ଦିଗକୁ ବୁଲି ଦକ୍ଷିଣ-ପଶ୍ଚିମ (S. W) ମୌସୁମି-ବାୟୁରେ ପରିଣତ ହୋଇଯାଏ । ଠିକ୍ ଏହିପରି ଗ୍ରୀଷ୍ମଋତୁରେ ଆଫ୍ରିକାରେ ମଧ୍ୟ ଆଟ୍‌ଲାଣ୍ଟିକ୍ ମହାସାଗରର (S. E) ଦକ୍ଷିଣ-ପୂର୍ବ-ବାଣିଜ୍ୟ-ବାୟୁ ଡାହାଣ ଦିଗକୁ ବୁଲି ସାମୟିକ (Seasonal) ବାୟୁସ୍ରୋତରେ ପରିଣତ ହୋଇଯାଏ, ଫଳତଃ ଭେର୍ଡ୍ ଅନ୍ତରୀପ (Cape Verde) ଓ ଉକ୍ଟୋରିଆ ହ୍ରଦ ମଧ୍ୟବର୍ତ୍ତୀ ବିସ୍ତୃତ ଭୂଭାଗରେ ଭାରି ବୃଷ୍ଟି ହୁଏ । ଆଫ୍ରିକାର ଅତି ଉତ୍ତର ଅଞ୍ଚଳ ଅପେକ୍ଷା ଦକ୍ଷିଣାର୍ଦ୍ଧରେ ଅଧିକ ବର୍ଷା ହୁଏ । କାରଣ, ଦକ୍ଷିଣାର୍ଦ୍ଧକୁ ଦକ୍ଷିଣ-ପୂର୍ବ-ବାଣିଜ୍ୟ-ବାୟୁ (ଭାରତ-ମହାସାଗରରୁ) ତେଣୁ ବର୍ଷା ଧରି ଅସେ । ସୁଦୂର ଉତ୍ତର-ଆଫ୍ରିକାର ପୂର୍ବ ଓ ଉତ୍ତର ଦିଗରେ ୟୁରେସିଆର ପ୍ରକାଣ୍ଡ ଭୂମିଖଣ୍ଡ ବିସ୍ତୃତ । ତୁମେମାନେ ଜାଣିଛ, ଆଫ୍ରିକାକୁ ମୁହିଁ କରି ରହିଥିବା ଦକ୍ଷିଣ-ପଶ୍ଚିମ-ଏସିଆ ଗୋଟିଏ ଉଚ୍ଚ, ଶୁଷ୍କ ମାଳଭୂମି । ଏଣୁ ଏସିଆରୁ ବହିଯିବା ଶୁଷ୍କ ପବନ ଆଫ୍ରିକାକୁ ବୃଷ୍ଟି ଯୋଗାଏ ନାହିଁ ।

ଆଟ୍‌ଲାସପର୍ବତମାଳାରେ ସାମାନ୍ୟ ବର୍ଷା ହୁଏ । ପର୍ବତର ବାହାର ଢାଲୁ ଜାଗା ବା ଗଡ଼ାଣିଅସ୍ଥାନଟି (outer slopes) ଜଙ୍ଗଲମୟ । ଏ ବନରେ oak ଓ cork ଗଛ ଦେଖାଯାଏ । ଏହି ଢାଲୁ ବା କ୍ରମନିମ୍ନ ଭୂମିର ପଛ ଭାଗରେ ଜୀତ, ତାଳ, ଖଜୁରି ଓ କମଲାଗଛ ଦେଖାଯାଏ । ଏ ପର୍ବତର ଅଧିକ ଶୁଷ୍କ ଉର୍ଦ୍ଧ୍ୱଭାଗରେ esparto ନାମକ ଏକ ପ୍ରକାର ଶକ୍ତ ତୃଣ ବା ଘାସ ବହୁ ପରିମାଣରେ ଜନ୍ମେ । କାଗଜ ତିଆରି କରିବାପାଇଁ ଏ ଘାସ ୟୁରୋପକୁ ପଠାଯାଏ ।

କୃଷିଯୋଗ୍ୟ ଭୂମିରେ ଖଜୁରିଫଳ, ଡ଼ିମିରି ଫଳ, ଦ୍ରାକ୍ଷା, ବାଦାମ, ଗହମ, ଯବ, ମକା, କିଛି ଧାନ ଉତ୍ପନ୍ନ ହୁଏ । ଆଟ୍‌ଲାସ୍ ପର୍ବତର ପୂର୍ବ ପ୍ରାନ୍ତରେ ଖଜୁରିଫଳ ଫଳେ । ଭୂମଧ୍ୟସାଗରୋପକୂଳର ଅବଶିଷ୍ଟ ଅଂଶରେ ଅତ୍ୟନ୍ତ କମ୍ ବର୍ଷା ହୁଏ ।

ଆଫ୍ରିକାର ମଧ୍ୟଭାଗରେ ଅତ୍ୟଧିକ ସୂର୍ଯ୍ୟତାପ ଓ ପ୍ରଚୁର ବୃଷ୍ଟିପାତ ହୁଏ; ଏଣୁ ଏ ଭାଗଟି ଜବର୍ଦ୍ଦ ବନଜଙ୍ଗଲପୂର୍ଣ୍ଣ । ପ୍ରକାଣ୍ଡ ଆଫ୍ରିକା-ବନର ଦୃଶ୍ୟ ଅତି ଚମତ୍କାର । ଏଠାର ବୃକ୍ଷସବୁ ଅନେକ ପୁଷ୍ପିତ ଲତାରେ ଏପରି ପରସ୍ପର ଛନ୍ଦାଛନ୍ଦି ଗଡ଼ାଗଡ଼ି ହୋଇ ଉଠିଥାଏ ଯେ, ବଡ଼ ବଡ଼ କୁଠାରରେ ବାଟ ନ ହାଣି ଭିତରେ ପଶିବା ନିତାନ୍ତ ଅସମ୍ଭବ, କଠିନ । ଏଠାରେ ସୂର୍ଯ୍ୟାଲୋକ ତଳମାଟି ପର୍ଯ୍ୟନ୍ତ ପାରେ ନାହିଁ । ସୂର୍ଯ୍ୟା-ଲୋକ ପାଇବାପାଇଁ ସମସ୍ତ ବୃକ୍ଷ, ଲତା ମଧ୍ୟରେ ଯେପରି ବରାବର ଠେଲାଠେଲି ପେଲାପେଲି ଲାଗିଥାଏ—ଲତାଗୁଡ଼ିକ ବଡ଼ ବଡ଼ ଗଛ-ଉପରକୁ ଉଠିଯାଏ । ଏ ଜଙ୍ଗଲରେ ବେଶି ଆବଲୁସ (Ebony) ଓ ମାହୋଗାନି (Mahogany) କାଠ ମିଳେ । ଗଛଚଢ଼ିବା ଜନ୍ତୁମାନେହିଁ ଏ ବନରେ ବାସ କରି ପାରନ୍ତି । ମନୁଷ୍ୟାକୃତି ବାନର, ପକ୍ଷୀ ଓ ବିବିଧ କୀଟ ଏଠାରେ ଦେଖା ଯାନ୍ତି । ନଦୀବାଟେ ନୌକା ଚଢ଼ି ଏ ଅରଣ୍ୟରେ ପଶିବାକୁ ହୋଇଥାଏ—ଅନ୍ୟ ଉପାୟରେ ନୁହେ । ଏ ଜଙ୍ଗଲର ଉତ୍ତର ଓ ଦକ୍ଷିଣ ଦିଗରେ ମରୁଭୂମି ବିସ୍ତୃତ—ଉତ୍ତରରେ ସାହାରା, ଦକ୍ଷିଣରେ କଲହରି (Kalahari) ମରୁଭୂମି ।

ଆଫ୍ରିକାର ଅତି ଶୁଷ୍କ ଓ ଅତି ଆର୍ଦ୍ର ଭାଗ ସମ୍ବନ୍ଧରେ ପଢ଼ିସାରିଛ । ମହାଦେଶର ଅନ୍ୟାନ୍ୟ ଭାଗ ସବୁ ତୃଣଭୂମିମୟ । ଏହା ବନ୍ୟ ପ୍ରଦେଶର ଠିକ୍ ଉତ୍ତର ଓ ଦକ୍ଷିଣ ପ୍ରାନ୍ତରେ ଅବସ୍ଥିତ । ଏହି ବୃକ୍ଷହୀନ ତୃଣସମାଚ୍ଛନ୍ନ ବିସ୍ତୀର୍ଣ୍ଣ ପ୍ରାନ୍ତରକୁ 'Savannah' ବୋଲାଯାଏ । ଏଠାରେ ନାନା ପ୍ରକାର ତୃଣ ବା ଘାସ ବେଶି ପରିମାଣରେ ବଢେ, ଖୁବ୍ ଲମ୍ବା ହୋଇ

ୃ। ହାତୀ, ମଇଁଷି, ଜେବ୍ରା (Zebra), ଜିରାଫ * (giraffe), ହରିଣ ବା କଳାବାହୁଣ୍ଡିଆ (antelope) ଇତ୍ୟାଦି ତୃଣଭୋଜୀ ଏହି ତୃଣାଚ୍ଛନ୍ନ ପ୍ରାନ୍ତରରେ ଦଳ ଦଳ ହୋଇ ଚରି ବୁଲନ୍ତି। ନଙ୍କୁ ମାରି ବସି ଖାଇବା ପାଇଁ ସିଂହ ଓ ବାଘ ନଙ୍ଗୁଆ ଜାଗାରେ ଣରୁ ତଳେ ଲୁଚି ରହିଥାନ୍ତି।

Savannahର ଉତ୍ତର ଓ ଦକ୍ଷିଣ ଭାଗରେ ମରୁଭୂମି। ଉତ୍ତର ଦକ୍ଷିଣ ଭାଗରେ ସମାନ୍ତର ତୃଣଭୂମି (parallel belts of vannah) ବିସ୍ତୃତ। ଉତ୍ତର ଦିଗରେ ସାହାରା ଅଞ୍ଚଳ ଏବଂ ଦକ୍ଷିଣ ରେ କଲହରି ଅଞ୍ଚଳ ପ୍ରଦେଶକୁ କ୍ରମେ ଶ୍ରେଷ୍ଠ, ପତଳା ହୋଇ ଅଛି—ଏ ଭାଗର ଠାଏଁ ଠାଏଁ ତୃଣଗୁଚ୍ଛ ଦେଖାଯାଏ। ଜନ୍ତୁମାନେ ରେ ଯଥେଷ୍ଟ ଖାଦ୍ୟ ପାଇ ପାରନ୍ତି ନାହିଁ। ପକ୍ଷହୀନ ଉଷ୍ଟ୍ରପକ୍ଷୀ ଏଠାରେ ଦେଖାଯାଏ। ଦୁଇ ପଖାର ଏହି ଶ୍ରେଷ୍ଠ, ପତଳା ତୃଣଭୂମି ନ ସାହାରା ଓ କଲହରି ମରୁଭୂମିରେ ଯାଇ ଶେଷ ହୋଇଅଛି।

ଜାମ୍ବେସି ନଦୀର ଦକ୍ଷିଣରେ ଥିବା ଉଚ୍ଚ ମାଳଭୂମିଟି ତୃଣପୂର୍ଣ୍ଣ। ଅଧିବାସୀ ଡଚ୍ (Dutch) କୃଷକମାନେ ଏ ମାଳଭୂମିକୁ ଚ୍ଚତୃଣଭୂମି" (High Veldt or High Grass land) ନାମ ଇଛନ୍ତି। ପ୍ରାୟ ସମଗ୍ର ଦକ୍ଷିଣ-ଆଫ୍ରିକାଟି ଗୋଟିଏ ପଶୁଚାରଣ ଭୂମି sture land),

ସାହାରାରେ ଯେଉଁ ସମସ୍ତ ଶ୍ରେଷ୍ଠ ସହର ଦେଖୁଛି, ସେ ସବୁ ଦ୍ୟାନ-ସହର। ଏ ସବୁ ସ୍ଥାନରେ ଉଷ୍ଟ୍ରଯାତ୍ରୀଦଳ ବିଶ୍ରାମ ନେଇଥାନ୍ତି। ାନଙ୍କ ମଧ୍ୟରେ Timbuktu ବିଶେଷ ଉଲ୍ଲେଖଯୋଗ୍ୟ, ଅତି ୀନ। ଏହା ବାଣିଜ୍ୟ-ମାର୍ଗର ମିଳନ-ସ୍ଥଳ, ମରୁଭୂମି-ବାଣିଜ୍ୟ-କେନ୍ଦ୍ର।

---

ରାଫ ଏକ ଦୀର୍ଘଗ୍ରୀବ ଚତୁଷ୍ପଦ ଜନ୍ତୁ। ଜିରା ଅନ୍ୟାନ୍ୟ [illegible] ପଶୁ। ତାର [illegible] ାର ଦେହ [illegible]।

ନାଇଜେରର ନଦୀରେ ନୌକା ଓ ଷ୍ଟେମ୍ ଜାହାଜ ଆସି Timbuktuରେ ପହଞ୍ଚେ । ଏହାକୁ 'ଉଷ୍ଟ୍ର-ନୌକା-ମିଳନସ୍ଥାନ' (the meeting place of the camels and canoe)

ପ୍ରଶ୍ନ:— ଅଫ୍ରିକାର ଅତି ଉତ୍ତର ଭାଗ ଅପେକ୍ଷା ଦକ୍ଷିଣାର୍ଦ୍ଧରେ ଅଧିକ ବର୍ଷା ହୁଏ କାହିଁକି ?

Savannah ବୋଲଲେ କଣ ?

Savannahରେ କି କି ଉଦ୍ଭିଦ ଜନ୍ମେ, କି କି ଜନ୍ତୁ ଦେଖା ଯାନ୍ତି ?

## ୬ ଉତ୍ତର ଆଫ୍ରିକା

ଆଟ୍‌ଲାସ ପର୍ବତ:—

ଏ ପର୍ବତଟି ଅଫ୍ରିକାର ଉତ୍ତର-ପଶ୍ଚିମ କୋଣରେ ଅବସ୍ଥିତ । ଏହା ସ୍ପେନ୍ ଦେଶକୁ ମୁଖ କରି ରହିଅଛି । ଆଟ୍‌ଲାସ ପଶ୍ଚିମପ୍ରାନ୍ତ ଠାରୁ ତିନିଗୁଣ ଉଚ୍ଚ । ଏହା ପ୍ରକୃତରେ ଦୁଇ ଗୋଟି ସମାନ୍ତର ପର୍ବତ ଶ୍ରେଣୀରେ ବିଭକ୍ତ—ଏ ଦୁଇ ଶ୍ରେଣୀ ମଧ୍ୟରେ ଗୋଟିଏ ମାଳଭୂମି ଦେଖାଯାଏ । ଏ ପର୍ବତର ଢାଲୁ ପ୍ରଦେଶ ସବୁ (Slopes) ବଡ଼ ଫଳବନ୍ତ ।

ମରକ୍କୋ:—

ଅଫ୍ରିକାର ଉତ୍ତର-ପଶ୍ଚିମ କୋଣରେ ମରକ୍କୋ (Morocco) । ଏହା ଗୋଟିଏ ସ୍ୱାଧୀନ ଦେଶ—ଜଣେ ସୁଲତାନଙ୍କ ଦ୍ୱାରା ଶାସିତ ହୁଏ । ଏଠାର ରାଜ୍ୟଶାସନ ଭଲ ନୁହେ । ଏ ଦେଶରେ ରେଲମାର୍ଗ ବା ଉପଯୁକ୍ତ ସଡ଼କ ନାହିଁ । ଫେଜ୍ (Fez) ଏଠାର ରାଜଧାନୀ । ସୁଲତାନ କେତେକ ମାସ ମରକ୍କୋ ସହରରେ ବି ଅବସ୍ଥାନ କରନ୍ତି । ମରକ୍କୋ ବର୍ତ୍ତମାନ ଫ୍ରାନ୍ସର ଏକ ଆଶ୍ରିତ ରାଜ୍ୟ (protectorate)

ଏହି ରାଜ୍ୟଟି ଅତି ଫଳବତୀ, ଖଣିଜଦ୍ରବ୍ୟପୂର୍ଣ୍ଣ । ଆଟ୍ଲାସ-ଉପତ୍ୟକାରେ ମେଷପାଳନ ବ୍ୟବସାୟ ପ୍ରଚଳିତ । ମେଷ-ଲୋମରେ ସତରଞ୍ଜି ତିଆରି ହୁଏ । ମରୋକ୍କୋ ସହର ଚର୍ମ୍ମ ବ୍ୟବସାୟ ନିମନ୍ତେ ପ୍ରସିଦ୍ଧ । ଫେଜ୍‌ରେ ତୁର୍କିଜାତିବ୍ୟବହୃତ ଟୋପି (Fez Caps) ଓ କମ୍ବଳ ପ୍ରସ୍ତୁତ କରାହୁଏ । ଏ ସହରରେ ଗୋଟିଏ ମୁସଲମାନ-ବିଶ୍ୱବିଦ୍ୟାଳୟ ଅଛି ।

ଟ୍ୟୁନିସ୍ ଓ ଅଲ୍‌ଜିରିଆ:—

ଫରାସି ଉପନିବେଶମାନଙ୍କ ମଧ୍ୟରେ ଏ ଦୁଇଟି ସର୍ବପ୍ରଧାନ । ଫରାସିସରକାରଙ୍କର ସୁଶାସନ ଯୋଗେ ଏ ଦୁଇ ଦେଶର ଲୋକେ ବଡ଼ ସୁଖ ସନ୍ତୋଷରେ ଅଛନ୍ତି । ଫରାସିଗଭର୍ଣ୍ଣମେଣ୍ଟ ଏଠାରେ ଅନେକ କେନାଲ, ଜଳଭଣ୍ଡାର, ସଡ଼କ ଓ ପୋତାଶ୍ରୟ ନିର୍ମାଣ କରିଅଛନ୍ତି । ଅଲ୍‌ଜିରିଆର ରାଜଧାନୀ ଓ ପ୍ରଧାନ ବନ୍ଦର Algiers । ଏ ବନ୍ଦରରୁ ପ୍ରଧାନତଃ ଫ୍ରାନ୍ସକୁ ଷ୍ଟୀମାର୍‌ରେ ଲୋମ, ମଦିରା, esparto ତୃଣ (କାଗଜ ତିଆରି ପାଇଁ), ଧୂଆଁପତ୍ର, ଗହମ ଓ ଲୁହା ପଠାଯାଏ । ଟ୍ୟୁନିସ୍‌ର ପ୍ରଧାନ ନଗର ଟ୍ୟୁନିସ୍ (Tunis) ଆଫ୍ରିକାର ଉତ୍ତରୋପକୂଳରେ ଆଲେକ୍‌ଜାଣ୍ଡ୍ରିଆକୁ ବାଦ୍ ଦେଲେ, ଟ୍ୟୁନିସ୍ ହେଉଛି ଦ୍ୱିତୀୟ ବୃହତ୍ତମ ବାଣିଜ୍ୟ-ବନ୍ଦର ।

ତ୍ରିପୋଲି (Tripoli):—

ଏହା ଇଟାଲି ଦେଶର ଅଧୀନ । ତ୍ରିପୋଲି ଏଠାର ରାଜଧାନୀ— ଉପକୂଳରେ ଅବସ୍ଥିତ । ମଧ୍ୟ-ଆଫ୍ରିକାର ବଣିକ ଉଷ୍ଟ୍ର-ଯାତ୍ରୀଦଳ ଏଠାକୁ ଅନେକ ସମୟରେ ଯାଇଥାନ୍ତି ।

ମିଶରଦେଶ:—

ମାନଚିତ୍ରରେ, ମିଶର ବା ଇଜିପ୍ଟ ଦେଶ ଭାରତର ଯେ କୌଣସି ପ୍ରଦେଶ ଠାରୁ ବଡ଼ ଦେଖାଯାଏ; କିନ୍ତୁ ଏହାର ଅଧିକାଂଶ ମରୁଭୂମି, ଅଳ୍ପ ଭାଗ ମାତ୍ର କୃଷିଯୋଗ୍ୟ । ଏଣୁ ଏଠାର ଲୋକସଂଖ୍ୟା କମ୍ । ଆଗେ ପଢ଼ିଛ, ମିଶର ହେଉଛି 'ନୀଳନଦୀର ଦାନ' । ପ୍ରତିବର୍ଷ ଅବିସିନିଆର୍

ପର୍ବତଶ୍ରେଣୀରେ ମୌସୁମି-ବର୍ଷା ପଡ଼ିବାକ୍ଷଣି ନୀଲନଦୀରେ ଉକ୍ତ ବନ୍ୟା ହୋଇଥାଏ । ଏହି ଅଗ୍ନେୟଗିରିମାଳାର ଉଦ୍ଗୀର୍ଣ୍ଣ ଗଳିତ ନିସ୍ରବ (lava) ଉର୍ବର, ଉତ୍ପାଦନକ୍ଷମ । ଏହି ଅଗ୍ନେୟଗିରି-ପାର୍ଶ୍ୱରେ ଭୂମି ଫଳଶାଳିନୀ ହୋଇଥାଏ । ଏହା ବଡ଼ ଉଲ୍ଲାସ, ନୀଳନଦୀ-ସ୍ରୋତରେ ଶତ ଶତ ମାଇଲ ଭାସି ଯାଇ ନଦୀତଟବର୍ତ୍ତୀ କ୍ଷେତ ଓ ମୃତ୍ତିକାରେ ବସ୍ତୃତ, ବକ୍ଷିପ୍ତ ହୋଇ ପଡ଼େ । କୈରୋ ସହର ନିକଟରେ ନୀଳ-ଜଳ ୨୫ ଫୁଟ ଉପରକୁ ଉଠେ । ଆମର ସିନ୍ଧୁ ପ୍ରଦେଶ (Sind) ଅପେକ୍ଷା ନୀଳ ମୃତ୍ତିକାରେ ଉଣା ବୃଷ୍ଟି ହୁଏ । ଏଣୁ ଏ ନଦୀର ବାର୍ଷିକ ବନ୍ୟା କେତେ ଦୂର ଆବଶ୍ୟକ, ଉପଯୋଗୀ ତାହା ସହଜରେ ବୁଝିପାରୁଥିବ । ଏ ବଢ଼ିପାଣି ଯୋଗେହିଁ ଶସ୍ୟାଦି ଜନ୍ମେ । ମିଶର ଭଳିଆ ଦେଶ ପୃଥିବୀରେ ଦେଖା ଯାଏ ନାହିଁ । ନୀଳନଦୀ ଓ କୃତ୍ରିମ-ଜଳଦାନ-ପ୍ରଣାଳୀ (irrigation) ନ ଥିଲେ ଏ ଦେଶଟି ଯେ ସାହାରାର ଗୋଟିଏ ଅଂଶ ହୋଇ ପଡ଼ିଥାନ୍ତା, ଏଥିରେ ସନ୍ଦେହ ବା କଣ ? ହଜାର ହଜାର ବର୍ଷ ହେଲା ଏଠାର ଲୋକେ କ୍ଷେତରେ ନଈପାଣି ମଡ଼ାଇ ଆସୁଛନ୍ତି । ଆଜକୁ ପ୍ରାୟ ୪୦ ବର୍ଷ ହେଲା ଏ ଦେଶର କୃତ୍ରିମ-ପୟଃପ୍ରଣାଳୀ ଖୁବ୍ ଉନ୍ନତି ଲାଭ କରୁଅଛି— ଫଳରେ ଜନସଂଖ୍ୟା ଦୁଇ ଗୁଣ ବଢ଼ିଅଛି । ଇଞ୍ଜିନିଅର୍‌ମାନେ ନୀଳ ନଦୀରେ ବଡ଼ ବଡ଼ ବନ୍ଧ (dam) ନିର୍ମାଣ କରୁଅଛନ୍ତି । Aswan (Assuan) ହେଉଛି ଏଠାର ବୃହତ୍ତମ ବନ୍ଧ । ନଭେମ୍ବର ଓ ଅପ୍ରେଲ୍ ମାସ ମଧ୍ୟରେ ଏହି ବନ୍ଧର ସ୍ରୋତକବାଟ ସବୁ (sluices) ବନ୍ଦ କରା ଯାଏ—ଫଳରେ ନୀଳନଦୀ ପ୍ରାୟ ୨୦୦ ମାଇଲ ଦୈର୍ଘ୍ୟର ଏକ ହ୍ରଦରେ ପରିଣତ ହୋଇ ଯାଏ । ଲୋକେ ଏହି ରୁଦ୍ଧ ଜଳ କ୍ରମେ ଛାଡ଼ି ଦେଇ ମଧ୍ୟ-ମିଶରର କେନାଲ ସବୁ ପୂର୍ଣ୍ଣ କରିଥାନ୍ତି । ଏହି ଉପାୟରେ ବର୍ଷତମାମ ଅନେକ କ୍ଷେତ ଖୁବ୍ ଫଳବତୀ ହୋଇ ଉଠେ ।

ଶ୍ରେଷ୍ଠ ଜଳବାୟୁ ଓ ପୟଃପ୍ରଣାଳୀ ଯୋଗେ ମିଶର ଦେଶରେ (ପଞ୍ଜାବ ଭଳି) ଭଲ ଗହମ ହୁଏ । ଏଠାରେ କପା ମଧ ଅଦାପ୍ତ ଓ ରପ୍ତାନୀ କରାଯାଏ । ଏଠାର ଅନ୍ୟାନ୍ୟ ଶସ୍ୟ ମଧ୍ୟରେ ଆଖୁ, ମକା, ଜହ୍ନା, ଧାନ ପ୍ରଧାନ । ନୀଳତଟରେ, ମରୂଦ୍ୟାନରେ ବେଶି ଖଜୁରି ଫଳେ ।

ନୀଳରେ କେତେଗୋଟି ବୃହତ୍ ଜଳପ୍ରପାତ ଦେଖାଯାଏ ଏବଂ ଏ ସମସ୍ତ ଜଳପ୍ରପାତ ମଧ୍ୟରେ ନୌକା ଓ ଛୋଟ ଛୋଟ ଜାହାଜ ଯାତାୟାତ କରେ । ଏ କଥା ତୃତୀୟ ପରିଚ୍ଛେଦରେ ପଢି ଜାଣିଛ ।

ମିଶରଦେଶର ରାଜଧାନୀ କେଁରୋ ଆଫ୍ରିକାର ବୃହତ୍ତମ, ସର୍ବ-ପ୍ରଧାନ ନଗର । ବୋମ୍ବାଇରେ ଯେତେ ଲୋକ ଅଛନ୍ତି, କେଁରୋରେ ପ୍ରାୟ ସେତିକି ଲୋକ ବାସ କରନ୍ତି । ଏହା ଏକ ମୁସଲମାନ ନଗର, ମସ୍‌ଜିଦ୍‌ପୂର୍ଣ୍ଣ । ଏଠାରେ ଫରାସି, ତୁର୍କି, ଗ୍ରୀକ ଓ ଆରବ ଜାତିର ଲୋକେ ମଧ୍ୟ ବାସ କରନ୍ତି । ଶୀତ ଦିନେ ଅନେକ ୟୁରୋପୀୟ ପର୍ଯ୍ୟଟକ କେଁରୋର ସମସ୍ତ ହୋଟେଲ୍ (Hotel)ରେ ଆସି ଭର୍ତ୍ତି ହୁଅନ୍ତି । ଶୀତ ଦିନେ ସମସ୍ତ ୟୁରୋପୀୟ ଦେଶରେ ବଡ ଥଣ୍ଡା କୁହୁଡି ଉଠେ । ଏଥିରୁ ରକ୍ଷା ପାଇବା ପାଇଁ ଏବଂ ମିଶର ଦେଶର ଅତି ପ୍ରାଚୀନ ଦେବମନ୍ଦିର ଓ ପ୍ରସିଦ୍ଧ ପିରାମିଡ୍ (pyramids) ବା ସୂକ୍ଷ୍ମାଗ୍ର ଉଚ୍ଚ ମନ୍ଦିର ଦେଖିବା ଉଦ୍ଦେଶ୍ୟରେ ୟୁରୋପର ଅନେକ ପର୍ଯ୍ୟଟକ କେଁରୋକୁ ଆସିଥାନ୍ତି । ଏ ସହର ନିକଟରେ ଚମତ୍କାର ପିରାମିଡ୍ ସବୁ ଦେଖାଯାଏ ।

ଆଲେକ୍‌ଜାଣ୍ଡ୍ରିଆ ପ୍ରଧାନ ସାଗର-ବନ୍ଦର, ନୀଳ-ମୁହାଣରେ ଅବସ୍ଥିତ । ଭୂମଧ୍ୟସାଗରର ଅନ୍ୟାନ୍ୟ ବନ୍ଦର ସହିତ ଏ ସହରର ଢେର ବାଣିଜ୍ୟ-ସମ୍ବନ୍ଧ ଅଛି । ଭାରତର କରାଚି ସଙ୍ଗେ ଆଲେକ୍‌ଜାଣ୍ଡ୍ରିଆର ଠିକ୍ ତୁଳନା କରି ଯାଇପାରେ । ନାମରୁ ବୁଝିପାରୁଛ, ଏ ସହରଟି ପ୍ରସିଦ୍ଧ ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । Asyut, Aswan ଓ Wadi Halfa—ଏ ତିନୋଟି ବେଉଛି

ମାଲ-ଟହେବନ୍ତୀ ଅନ୍ୟାନ୍ୟ ବାଣିଜ୍ୟପ୍ରଧାନ ସହର । ଅଲେକ୍‌ଜାଣ୍ଡ୍ରିଆ, ପୋର୍ଟସେଡ୍‌, ସୁଏଜ ଓ କୈରୋ ରେଲମାର୍ଗ ଦ୍ୱାରା ସଂଯୁକ୍ତ । ପ୍ରଧାନ ରେଲପଥଟି କୈରୋ ଠାରୁ Aswan ପର୍ଯ୍ୟନ୍ତ ବିସ୍ତୃତ ।

ପ୍ରଶ୍ନ:— ମିଶର ଦେଶଟି କେଉଁ କାରଣରୁ ଫଳବତୀ ?

ପ୍ରତି ବର୍ଷ ୟୁରୋପୀୟ ପର୍ଯ୍ୟଟକମାନେ କୈରୋକୁ ଆସିଥାନ୍ତି କାହିଁକି ?

## ୭ ସୁଏଜ୍‌କେନାଲ ।

ସୁଏଜ୍‌କେନାଲ ୮୭ ମାଇଲ ଦୀର୍ଘ, ୨୮ ଫୁଟ ଗଭୀର ଓ ୧୫୦—୩୦୦ ଫୁଟ ଓସାର । ଏହା ଭୂମଧ୍ୟସାଗରକୁ ଲୋହିତସାଗର ସଙ୍ଗେ ସଂଯୁକ୍ତ କରି ଅଛି । ଏହି କେନାଲଟି ଜଗତର ସର୍ବପ୍ରଧାନ ଜଳମାର୍ଗ ମଧ୍ୟରେ ଅନ୍ୟତମ । ଏହା ୧୮୬୯ ସାଲରେ ଫେର୍‌ଡ଼ିନାଣ୍ଡ୍ ଡ଼ ଲେସେପ୍‌ସ (Ferdinand de Lesseps) ନାମକ ଜଣେ ଫରାସୀ ଏଞ୍ଜିନିଅରଙ୍କ ଦ୍ୱାରା ଖୋଲା ଯାଇଥିଲା । କେନାଲଟି ଖୋଳିବା ପାଇଁ ୧୦ ବର୍ଷ କାଳ ଲାଗିଥିଲା ଏବଂ ଦୁଇକୋଟି ପାଉଣ୍ଡ୍ (ତିରିଶିକୋଟି ଟଙ୍କା) ଖର୍ଚ୍ଚ ହୋଇଥିଲା । ସୁଏଜ୍ କେନାଲ ବର୍ତ୍ତମାନ ଯେଉଁ କୋମ୍ପାନୀ ଦ୍ୱାରା ପରିଚାଳିତ, ସେଥିରେ ବ୍ରିଟିଷ୍ ସରକାରଙ୍କର ବୃହତ୍ତମ ଅଂଶ ଅଛି । ସାଧାରଣରେ ପ୍ରତ୍ୟହ ଦଶ ଗୋଟି ଜାହାଜ କେନାଲରେ ଯା ଆସ କରେ ।

ଆଗେ ଜାହାଜ ସବୁ ଏ କେନାଲରେ କେବଳ ଦିନବେଳେ ଯିବା ଆସିବା କରୁଥିଲା ଏବଂ କେନାଲର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଯିବାପାଇଁ ଦେଢ଼ ଦିନ ଲାଗୁଥିଲା । ଆଜି କାଲି କିନ୍ତୁ ପ୍ରତ୍ୟେକ ଷ୍ଟୀମାର୍‌ରେ ଖୁବ୍ ବଡ଼ ଶକ୍ତିଶାଳୀ ଅନୁକୂଳ ବୈଦ୍ୟୁତିକାଲୋକ (search-light) ରଖା ଯିବାରୁ, କେନାଲରେ ରାତିବେଳେ ବି ଯାତ୍ରା କରିବା ସୁବିଧାଜନକ । ଆଜି କାଲି କେନାଲଟିର ଗୋଟିଏ ମୁଣ୍ଡରୁ

ଅନ୍ୟ ମୁଣ୍ଡକୁ ଯିବା ସକାଶେ ୧୪।୧୬ ଘଣ୍ଟାରୁ ଅଧିକ ସମୟ ଲାଗେ ନାହିଁ । ଜାହାଜ ଅତି ଚଞ୍ଚଳ ଚଳାଇଲେ ବଡ଼ ବଡ଼ ଲହରୀ ଉଠି ଦୁଇ ତଟ ବା ବନ୍ଧକୁ ଭସାଇ ନେଇଯିବ, ଏହି ଆଶଙ୍କାରେ କେନାଲ ମଧ୍ୟରେ ଜାହାଜସବୁ ଅତି ଧୀର ଗତିରେ ନେବାକୁ ହୋଇଥାଏ । କେନାଲର ପ୍ରତି ୫।୬ ମାଇଲ ଅନ୍ତରରେ ଉଭୟ ତଟ ବା ପାର୍ଶ୍ୱ ଖୁବ୍ ଓସାର କରାଯାଇଛି । ଏହିଳି ଓସାର ସ୍ଥାନକୁ କେନାଲର 'ପାର୍ଶ୍ୱ-ବିଶ୍ରାମସ୍ଥଳ' (Siding) କହନ୍ତି । ବିପରୀତ ଦିଗରୁ ଦୁଇଟି ଜାହାଜ ଯିବାବେଳେ ଏ ପାର୍ଶ୍ୱ-ବିଶ୍ରାମ-ସ୍ଥଳରେ ଗୋଟିଏ ଜାହାଜ ଟାଣିନେଇ ବାନ୍ଧି ଦିଅନ୍ତି । ଅନ୍ୟ ଜାହାଜଟି ବାହାରିଯିବା ପରେ ତାହା ଫିଟାଇ ଚଳାନ୍ତି । ପ୍ରତ୍ୟେକ ପାର୍ଶ୍ୱ-ବିଶ୍ରାମ-ସ୍ଥଳରେ ଜଣେ ସଙ୍କେତ-ସମ୍ବାଦ-ଜ୍ଞାପକ (signalist) ଥାଏ । ଜାହାଜ ଗୋଟିଏ siding ଛାଡ଼ିଯିବା ଆଗରୁ ଅନ୍ୟ sidingକୁ ସମ୍ବାଦ ଦିଆଯାଏ ।

ସୁଏଜ୍ କେନାଲ ନିର୍ମିତ ହେବା ପୂର୍ବେ ୟୁରୋପର ଜାହାଜ ସବୁ ଉତ୍ତମାଶା ଅନ୍ତରୀପ (Cape of Good Hope) ମାର୍ଗରେ ଭାରତ, ଚୀନ ଓ ଅଷ୍ଟ୍ରେଲିଆକୁ ଆସୁଥିଲା—ଏହି ଜଳଯାତ୍ରାଟି ୩୦୦୦ ମାଇଲ ବିସ୍ତୃତ ଥିଲା । ଏ କେନାଲଟି ଖୋଲା ହେବା ଦିନ୍ରୁ ଏତେ ବାଟ ଆଉ ବୁଲିବାକୁ ହୁଏ ନାହିଁ । ମିଶରଦେଶ ବର୍ତ୍ତମାନ ସ୍ୱାଧୀନ ରହିବାକୁ ଇଚ୍ଛା କରେ, ବ୍ରିଟିଷ୍ ଅଧୀନତା ସ୍ୱୀକାର କରିବାକୁ ଚାହେଁ ନାହିଁ । ତେବେ ମିଶରକୁ ଯେପରି ହେଉ ନିଜ ହାତରେ ରଖିବାକୁ କିମ୍ବା ତା ସହିତ ସମ୍ବନ୍ଧ ଅକ୍ଷୁଣ୍ଣ ରଖିବାକୁ ଗ୍ରେଟ୍ ବ୍ରିଟେନ୍‌ର ଭାରି ଇଚ୍ଛା, ପ୍ରବଳ ଚେଷ୍ଟା । ଗ୍ରେଟ୍ ବ୍ରିଟେନ୍ ହେଉଛି ଜଗତର ବୃହତ୍ତମ ସାମୁଦ୍ରିକ-ଜାତି । ଏ ଜାତି ପୋତ-ବିଭବ ଓ ବାଣିଜ୍ୟ-ସମ୍ପଦରେ ପୃଥିବୀରେ ପ୍ରସିଦ୍ଧ । ଏଣୁ ସର୍ବପ୍ରଧାନ ଜଳପଥ ସୁଏଜ୍‌କେନାଲର ପରିଚାଳନାରେ ସେ ବଡ଼ ଅଂଶ ରଖିଅଛି । ସୁଏଜ୍‌କେନାଲ ବାଟେ ବ୍ରିଟିଷ୍-ଜାହାଜର ଅବାଧ

ଗମନାଗମନରେ କୌଣସି ଅସୁବିଧା ନ ଉଠାଇବାକୁ ଇଜିପ୍ଟ-ଶାସକ ବାଧ୍ୟ ହୋଇଅଛନ୍ତି । ଗତ ୟୁରୋପ-ଯୁଦ୍ଧ ବେଳେ ତୁର୍କି ଓ ଜରମନ୍ ଜାତି ଏ କେନାଲକୁ ଧ୍ୱଂସ କରିଦେବା ପାଇଁ ଖୁବ୍ ଚେଷ୍ଟା କରିଥିଲେ; କିନ୍ତୁ ଭାରତୀୟ ସୈନିକମାନେ ଅପୂର୍ବ ସାହସ, ବୀରତ୍ୱ ସହିତ କେନାଲକୁ ରକ୍ଷା କରିଥିଲେ ।

ପୋର୍ଟସେଡ୍:—

ଏ ସହରଟି ସୁଏଜ୍‌କେନାଲର ଉତ୍ତର-ପ୍ରବେଶ-ଦ୍ୱାର ବା ଭୂମଧ୍ୟସାଗର-ପ୍ରବେଶ-ପଥରେ ଅବସ୍ଥିତ । କେନାଲଟି ତିଆରି ହେବା ଦିନୁ ଏହା ଗୋଟିଏ ପ୍ରଧାନ, ପ୍ରସିଦ୍ଧ ସହର ହୋଇ ଉଠିଅଛି । ପୋର୍ଟସେଡ୍‌ଟି ମାଲଗୁଦାମ (warehouses) ଓ ପୋତ-ପରିଚାଳନ-କାର୍ଯ୍ୟାଳୟରେ ପୂର୍ଣ୍ଣ । କେନାଲ-କୋମ୍ପାନୀ-ଅଫିସ୍ ହେଉଛି ଏଠାର ଅତ୍ୟୁତ୍କୃଷ୍ଟ, ଅତିସୁନ୍ଦର ପ୍ରାସାଦ । ଏଠାରେ ଫେର୍ଡିନାଣ୍ଡ ଡି ଲେସେପସଙ୍କର ଗୋଟିଏ ବୃହତ୍‌ମୂର୍ତ୍ତି (statue) ସ୍ଥାପିତ ହୋଇଅଛି । ଏ ସହରଟି ପୃଥିବୀର ଗୋଟିଏ ସୁପ୍ରସିଦ୍ଧ ପୋତ ବିଶ୍ରାମ-ବନ୍ଦର, କୋଇଲା-ଷ୍ଟେସନ୍ । ଇଂଲଣ୍ଡର କୋଇଲା ଏଠାରେ ଆସି ସ୍ତୂପୀକୃତ ହୋଇ ପଡ଼ିଥାଏ । ପ୍ରତିବର୍ଷ ପ୍ରାୟ ଚାରି ହଜାର ଷ୍ଟିମର୍ ସୁଏଜ୍ କେନାଲ ମାର୍ଗରେ ଯା' ଆସ କରେ; ଏଣୁ ପୋର୍ଟସେଡ୍ ଅତ୍ୟନ୍ତ ପ୍ରାଧାନ୍ୟ ଲାଭ କରିଅଛି । ଏଠାରେ ପୋତ-ଚାଳକମାନେ ଏଞ୍ଜିନ ପାଇଁ କୋଇଲା କିଣନ୍ତି । ଏଠାରେ ଆରବ, ତୁର୍କି, ଗ୍ରୀକ୍, ମିଶରବାସୀ, ମାଲଟିଜ୍ (Maltese), ଇଟାଲୀୟ, ଫରାସି ଓ ଇଂରେଜ ଜାତିର ଲୋକେ ବାସ କରନ୍ତି । ଏଠା ପୋତାଶ୍ରୟରେ ଜଗତର ପ୍ରାୟ ସମସ୍ତ ଦେଶ ବା ଜାତିର ଜାହାଜ ବିଶ୍ରାମ ନେଇଥାଏ । ଏଠାରେ ଜାହାଜରେ କୋଇଲା ଦେବାବେଳେ କୋଇଲା-ଧୂଳିରେ ବାୟୁମଣ୍ଡଳ ପୂର୍ଣ୍ଣ ହୋଇଯାଏ; ଏଣୁ ଅନେକ ଯାତ୍ରୀ ଏଥିରୁ ରକ୍ଷା ପାଇବାପାଇଁ ଜାହାଜରୁ ଓହ୍ଲାଇ ୪।୫ ଘଣ୍ଟା କାଳ ଭିତରେ ବୁଲାବୁଲି କରନ୍ତି, ସହର ଦେଖି ଯା'ନ୍ତି ।

ପୋର୍ଟ ସୟେଜ:—

ଏ ସହରଟି ସୟେଜ୍‌କେନାଲର ଦକ୍ଷିଣ-ଦ୍ୱାରଦେଶର ଅର୍ଥାତ୍ ଲୋହିତସାଗର-ପ୍ରବେଶପଥରେ ଅବସ୍ଥିତ । ପ୍ରାଚୀନ କାଳରେ ସାଧାରଣ ଲୋକେ ଓ ବଣିକଦଳ ଓଟ ପିଠିରେ ଜିନସପତ୍ର ଲଦି ଏବଂ ନିଜେ ଚଢ଼ି ଅଲେକ୍‌ଜାଣ୍ଡ୍ରିଆଠାରୁ ସୟେଜ୍ ପର୍ଯ୍ୟନ୍ତ ଯାତ୍ରା କରୁଥିଲେ । ପରେ ସୟେଜ୍ ସହରରୁ କାଇରୋ ଓ ଅଲେକ୍‌ଜାଣ୍ଡ୍ରିଆକୁ ରେଲପଥ ପଡ଼ିଲା । ସୟେଜ୍-କେନାଲ ଖୋଲା ହେବା ଆଗେ ଲୋକେ ଏଠାରୁ ରେଲମାର୍ଗରେ ଅଲେକ୍‌ଜାଣ୍ଡ୍ରିଆ ଯାଉଥାନ୍ତି ଏବଂ ଅଲେକ୍‌ଜାଣ୍ଡ୍ରିଆରୁ ମାର୍ସିଲସ୍ ଓ ଲଣ୍ଡନକୁ ସମୁଦ୍ର-ଯାତ୍ରା କରୁଥାନ୍ତି । କେନାଲଟି କଲୁ ଏବେ ଏ ଅସୁବିଧା ଦୂର ହୋଇଅଛି । ସୟେଜ୍ ଗୋଟିଏ ଅସ୍ୱାସ୍ଥ୍ୟକର ସହର । ଏଠାରେ ଏସିଆର ପଣ୍ୟଦ୍ରବ୍ୟ ଓ ଉତ୍ପନ୍ନ ପଦାର୍ଥ ରପ୍ତାନି ହୁଏ ।

ପ୍ରଶ୍ନ:—

ସୟେଜକେନାଲ କେବେ କାହାଦ୍ୱାରା କପରି ଖୋଲା ଯାଇଥିଲା ?

ଏ କେନାଲର ଉପକାରିତା ବୁଝାଇଦିଅ ।

ମିଶରର ଅନିଚ୍ଛାସତ୍ତ୍ୱେ ବ୍ରିଟିଶ ସରକାର ତାହାର ସମ୍ବନ୍ଧ ତୁଟାଇ ଦେବାକୁ ମଙ୍ଗୁନାହାନ୍ତି କାହିଁକି ?



## ୮ ସୁଦାନ

ମିଶର ଦେଶର ଦକ୍ଷିଣରେ ସୁଦାନ (Sudan) ଅବସ୍ଥିତ—ଲିବିଆର ଦ୍ୱାବିଂଶତ ସମାନ୍ତର ଠାରୁ ପ୍ରାୟ ବିଷୁବରେଖା ପର୍ଯ୍ୟନ୍ତ ବିସ୍ତୃତ । ଏ ଦେଶର ଅଧିକ ଭାଗ ମରୁଭୂମି, ଏଣୁ ଏଠାର ଲୋକସଂଖ୍ୟା କମ୍—ବୋମ୍ବାଇର ଲୋକସଂଖ୍ୟାର ପ୍ରାୟ ଚାରି ଗୁଣ ହେବ । ନାଇଲ ନଦୀ ହେଉଛି ମିଶର ଓ ସୁଦାନ ମଧ୍ୟରେ ପ୍ରଧାନ ଜଳମାର୍ଗ । ଖାର୍ଟୁମ୍ (Khartum) ସହର

ପର୍ଯ୍ୟନ୍ତ ଏ ନଦୀରେ ଖ୍ରେଟ ଖ୍ରେଟ ଷ୍ଟୀମର୍ ଯା ଆସ କରପାରେ । ଆଲେକ୍‌ଜାଣ୍ଡ୍ରିଆ, ପୋର୍ଟ ସେଡ୍ ଓ ସୁଏଜ୍ ରେଲପଥ ଦ୍ୱାରା କୈରୋ ସହିତ ସଂଯୁକ୍ତ । କୈରୋରୁ Wadi Halfa ପର୍ଯ୍ୟନ୍ତ ରେଲପଥ ନିର୍ମିତ ହୋଇଅଛି । Wadi Halfa ଠାରୁ ସୁଦାନ-ରେଲମାର୍ଗଟି ବେର୍‌ବେର୍ ମଧରେ ଖାର୍ଟୁମ ଯାଏଁ ଯାଇଅଛି ଏବଂ ବେରବେର୍‌ରୁ ଏକ ଶାଖା-ରେଲପଥ ପୋର୍ଟ ସୁଦାନ (Port Sudan) ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି ।

ସୁଦାନର ରାଜଧାନୀ ଖାର୍ଟୁମ୍ । ଏଠାରେ ଉଭୟ ନୀଳ (The White Nile and the Blue Nile) ମିଳିତ ହୁଏ । ସହରଟି ବାଣିଜ୍ୟପ୍ରଧାନ; ଏଣୁ ଏହା ଅଚିରେ ଅଚିରେ ବୃହତ୍, ଅଧିକ ପ୍ରଧାନ ହେବାର ଆଶା କରାଯାଏ । Uganda ପର୍ଯ୍ୟନ୍ତ ବିସ୍ତୃତ ପ୍ରକାଣ୍ଡ ତୃଣାଚ୍ଛନ୍ନ ପ୍ରଦେଶର ଏହା କେନ୍ଦ୍ର । ଦୁଇ ନୀଳନଦୀ ମଧ୍ୟବର୍ତ୍ତୀ ସ୍ଥାନ (doab)ରେ ବେଶି କପା ଅଦାୟ ହୁଏ । ଏ କପା ନୌକାରେ ଖାର୍ଟୁମ୍‌କୁ ପଠାଯାଏ । ଏଠାରୁ ମରୁଭୂମିର ବାବୁଲ ଅଠା (gum arabic), ତୃଣଭୂମିର ହାତି-ଦାନ୍ତ, ଓଟପକ୍ଷିର ପର, ମରୁଦ୍ୟାନର ଖଜୁରୀ, ଦକ୍ଷିଣ-ଆଫ୍ରିକାର ଚମଡ଼ା ଆମଦାନି କରାଯାଏ । ସୁଦାନ ହାତିଦାନ୍ତ ଓ ବାବୁଲ ଅଠା-ବ୍ୟବସାୟ ପାଇଁ ପୃଥିବୀପ୍ରସିଦ୍ଧ ।

ବେଲ୍‌ଜିଅମ୍ କଙ୍ଗୋ:—

ବିଶାଳ କଙ୍ଗୋ-ଅବବାହିକାକୁ କହନ୍ତି 'ସ୍ୱାଧୀନ କଙ୍ଗୋରାଜ୍ୟ' (The Congo Free State) । ୧୮୮୫ ସାଲରେ ସମସ୍ତ ୟୁରୋପୀୟ ଜାତି ବେଲ୍‌ଜିଅମ୍ ଜାତିର ରାଜାଙ୍କୁ କଙ୍ଗୋରାଜ୍ୟର ଶାସକ-ପଦରେ ଅଧିଷ୍ଠିତ କରିଥିଲେ । ସମଗ୍ର ଦେଶଟି ବନଜଙ୍ଗଲପୂର୍ଣ୍ଣ । ଏ ବନରେ ରବର୍, ଅବଲୁସ୍ ଓ ଶାଳ (Teak) ଗଛ ଜନ୍ମେ ଏବଂ ହାତି-ଶିକାରୀମାନେ ଏ ବନରୁ ହାତି-ଦାନ୍ତ ଆଣିଥାନ୍ତି । ଏ ବନ୍ୟଜାତ ଦ୍ରବ୍ୟ ସବୁ ନଦୀମାର୍ଗରେ Leopoldfvilleକୁ ପଠାଯାଏ । ଏ ସହର

ନିକଟରେ କଙ୍ଗୋନଦୀର ଅଦ୍ଭୁତବେଗର (rapids) ଆରମ୍ଭ । ଏଣୁ ଏ ସବୁ ପଦାର୍ଥ ଏଠାରୁ ରେଲଗାଡ଼ିରେ ଏକ ନଦୀ-ବନ୍ଦରକୁ ପ୍ରେରିତ ହୁଏ ଏବଂ ସେଠାରୁ (କଙ୍ଗୋନଦୀରେ ଆସିବା) ଷ୍ଟିମାର୍‌ରେ ୟୁରୋପକୁ ପଠାଯାଏ । ବେଲ୍‌ଜିଅମ୍ କଙ୍ଗୋର ଜଳବାୟୁ ଗରମ, ଆର୍ଦ୍ର ଓ ଅସ୍ୱାସ୍ଥ୍ୟକର—ଏଠାରେ ଜ୍ୱରର ପ୍ରକୋପ ଅଧିକ । ଅଥଚ ଏ ରାଜ୍ୟରେ ଅନେକ ଲୋକ ବାସ କରନ୍ତି । ନିଗ୍ରୋଜାତି ଏ ଦେଶର ପ୍ରଧାନ ଅଧିବାସୀ । ବର୍ତ୍ତମାନ ସୁଦ୍ଧା ଏଠାର ଅନେକ ନିଗ୍ରୋ ନରମାଂସଭୋଜୀ (Cannibals)

ପ୍ରଶ୍ନ:— ବାଣିଜ୍ୟ-କ୍ଷେତ୍ରରେ ଖାର୍‌ଟୁମ୍ ସହରର ପ୍ରାଧାନ୍ୟର କାରଣ ନିର୍ଦ୍ଦେଶ କର ।

ବେଲ୍‌ଜିଅମ୍ କଙ୍ଗୋର ଉତ୍ପନ୍ନ ଦ୍ରବ୍ୟ ଓ ବ୍ୟବସାୟ ସମ୍ବନ୍ଧରେ କଣ ଜାଣ ?

---

## ୯ ଦକ୍ଷିଣ-ଆଫ୍ରିକା

ଆଫ୍ରିକା-ଉପଦ୍ୱୀପର ସମଗ୍ର ମଧ୍ୟଭାଗସ୍ଥ ବ୍ରିଟିଷ୍ ରାଜ୍ୟ । ଏହା ଉତ୍ତରରେ ଉଚ୍ଚୋଚ୍ଚ ହ୍ରଦର—ନ୍ୟାସା, ଟାଙ୍ଗାନିକା ଓ ମେରୁ (Mweru)ର—ତଟ ପର୍ଯ୍ୟନ୍ତ ବିସ୍ତୃତ । ସୁଦୂର ଦକ୍ଷିଣ ଭାଗରେ ସମୁଦ୍ର ଆଡୁ ଏ ଉପଦ୍ୱୀପରେ ପ୍ରବେଶ କରିବା କଠିନ । ଏ ଅଞ୍ଚଳ ଓ ମିଶର ମଧ୍ୟରେ କେତେ ତଫାତ୍ ! ଏଠାର ନଦୀ ବା ନିମ୍ନଭୂମି ସବୁ କୌଣସି ଉପକାରରେ ଆସେ ନାହିଁ । ଏଠାର ସମସ୍ତ ନଦୀ ଉତ୍ତର ଓ ଦକ୍ଷିଣ ଦିଗରେ ନ ଯାଇ ପୂର୍ବ ଓ ପଶ୍ଚିମ ଦିଗରେ ବହିଯାଏ । ଦକ୍ଷିଣ-ଆଫ୍ରିକାର ମାଳଭୂମି ଓ ସମୁଦ୍ର ମଧ୍ୟରେ ଉଚ୍ଚପର୍ବତଶ୍ରେଣୀ ଅବସ୍ଥିତ । ଏ ପର୍ବତସବୁ ସାଗରୋପକୂଳ ସମୀପରେ ସମାନ୍ତର ହୋଇ ରହିଅଛି ।

Cape Townରୁ ରେଳମାର୍ଗରେ ମହାଦେଶ ମଧ୍ୟକୁ ଯିବାକୁ ହେଲେ ଚାରି ଗୋଟି ପ୍ରକାଣ୍ଡ ପର୍ବତ ସୋପାନ ଚଢ଼ିବାକୁ ହୋଇ ଥାଏ—ପ୍ରଥମରେ ସମୁଦ୍ର-ତୀର-ଢାଲୁ (Slope), ଦ୍ୱିତୀୟରେ ଛୋଟ କାରୁ ଉଚ୍ଚଭୂମି (The Little Karoo) *, ପରେ ବୃହତ୍ କାରୁ (The Great Karoo), ଶେଷରେ ମାଳଭୂମି (High Veldt) ଅତିକ୍ରମ କରିବାକୁ ପଡ଼େ ।

ନେଟାଲ୍‌ରୁ (Natal) ମହାଦେଶ ଭିତରକୁ ଯିବାକୁ ଚେଷ୍ଟା କଲେ ଅଧିକ ଉଚ୍ଚ, ସରଳୋନ୍ନତ (Steep) ଭୂମି ଚଢ଼ିବାକୁ ହୁଏ । ଡର୍ବାନ (Durban)ରୁ ଆରମ୍ଭ ହେବା ରେଳମାର୍ଗଟି, ପ୍ରଥମ ୩୦ ମାଇଲ ମାର୍ଗରେ, ୨୦୦୦ ଫୁଟ ଉପରକୁ ଉଠିଅଛି । ଅତଏବ ଉପକୂଳରୁ ମାଳଭୂମିକି ଯିବା ଲୋକମାନଙ୍କୁ ମାଳଭୂମିର ଉଚ୍ଚ ପ୍ରାନ୍ତ ବା ଧାରଟି ଏକାବେଳକେ ଅଟକାଇ ରଖେ । ପାହାଡ଼ର ସରଳୋନ୍ନତ ପାର୍ଶ୍ୱରେ ରେଳପଥ ନ ପଡ଼ିଲେ ଦକ୍ଷିଣ-ଆଫ୍ରିକାର ମଧ୍ୟଭାଗଟି ସମୁଦ୍ରଠାରୁ ବିଚ୍ଛିନ୍ନ ହୋଇ ରହିବ ।

ଦକ୍ଷିଣ-ଆଫ୍ରିକାର The Drakensberg ପର୍ବତମାଳା ଠିକ୍ ପଶ୍ଚିମଘାଟ ପରି । ସମୁଦ୍ରର ଦକ୍ଷିଣ-ପୂର୍ବ-ବାଣିଜ୍ୟବାୟୁ ଏ ପର୍ବତରେ ଅଟକି ରହେ । ଏଣୁ ଏହାର ପୃଷ୍ଠ ଭାଗରେ ଥିବା ମାଳଭୂମିରେ ଅଳ୍ପ ବୃଷ୍ଟି ହୁଏ । ଅଳ୍ପ କାଳସ୍ଥାୟୀ ବର୍ଷାଋତୁରେ ଏଠାରେ ଘାସ ଚଞ୍ଚଳ ଉଠେ,

* ଏଠାର ଉଚ୍ଚଭୂମିକୁ 'କାରୁ' (Karoo) କହାଯାଏ । କାରୁ ସବୁ ମହାସାଗର-ତୀରରୁ କ୍ରମଶଃ ଉଚ୍ଚ ସୋପାନଶ୍ରେଣୀ (ପାହାଚ) ପରି ଉପରକୁ ଉଠିଅଛି । 'Karoo' ପଦର ଅର୍ଥ 'କଠିନ' (hard). ବର୍ଷର ଅତ୍ୟଳ୍ପ ସମୟ ମାତ୍ର କାରୁରେ ବର୍ଷା ହୁଏ । ବର୍ଷର ଅବଶିଷ୍ଟ ସମୟ ଏଠାର ଭୂମି ସମ୍ପୂର୍ଣ୍ଣ ଶୁଷ୍କ, ଶକ୍ତ ହୋଇପଡ଼େ । ତଥାପି ଏ ସମସ୍ତ ଉଚ୍ଚଭୂମିରେ ବହୁ ସଂଖ୍ୟକ ଗାଈ ଗୋରୁ, ମେଣ୍ଢା ଅଶ୍ୱ ଚରନ୍ତି । ପ୍ରତ୍ୟେକ କୃଷକ ଘୋଡ଼ା ଚଢ଼ି ନିଜର ପ୍ରକାଣ୍ଡ, ବିସ୍ତୃତ ଉଚ୍ଚଭୂମିର (farm) ପ୍ରତ୍ୟେକ ଭାଗ ଦେଖିବାକୁ ସମର୍ଥ ହୁଏ ।

ଫୁଲ ସବୁ ଚଞ୍ଚଳ ଫୁଟେ; କିନ୍ତୁ ଦୀର୍ଘ ଶୁଷ୍କ ବା ଗ୍ରୀଷ୍ମଋତୁରେ ଏଠାରେ କେବଳ ଶୁଷ୍କ ତୃଣ ଏବଂ କେତୋଟି ଗୁଳ୍ମ ଛଡ଼ା ଆଉ କିଛି ଦେଖା ଯାଏ ନାହିଁ । ନଦୀ-ତଟ ଛଡ଼ା, ଅନ୍ୟାନ୍ୟ ଭାଗରେ ଅତ୍ୟଳ୍ପ ବୃକ୍ଷ ଦେଖାଯାଏ । ଏ ଭାଗରେ କେନାଲ ଖୋଳିବା ଅର୍ଥାତ୍ କୃତ୍ରିମ-ଜଳଦାନ ବ୍ୟବସ୍ଥା କରିବା ଅତି କଠିନ । ଏହି ପ୍ରକାଣ୍ଡ, ଉଚ୍ଚ ମାଳଭୂମିଟି—ଦକ୍ଷିଣରେ ଉପକୂଳ ଠାରୁ ଉତ୍ତରରେ ଜାମ୍ବେସି ନଦୀ ତଟ ପର୍ଯ୍ୟନ୍ତ—ଗୋଟିଏ ନୀରସ, ଦୁର୍ବଳ ପଶୁଚାରଣ ଦେଶ (Pasture Country) । ଗାଈ, ଗୋରୁ, ଛେଳି, ମେଣ୍ଢା ଓ ଘୋଡ଼ା ଏଠାର ଘାସ ଖାଇ ବଞ୍ଚନ୍ତି । ବର୍ଷା ଦିନେ ଛଡ଼ା, ଅନ୍ୟ ଋତୁରେ ଅତ୍ୟଳ୍ପ ଘାସ ଉଠିବାରୁ ଇଜରାଭୂମି ବା farm ସବୁ ପରସ୍ପର ଠାରୁ ଖୁବ୍ ବିଚ୍ଛିନ୍ନ ହୋଇ ପଡ଼ି ରହେ—କିନ୍ତୁ ଦୂର ଚରି ଯାଇ ଗାଈ ଗୋରୁ ଇତ୍ୟାଦି ପଶୁ ଯଥେଷ୍ଟ ଘାସ ପା'ନ୍ତି ।

ଏଠାର ଲୋକେ ତାମ୍ବୁ ପକାଇ ଓଟପକ୍ଷୀ-କୁଥ ବାହାର କରନ୍ତି ଏବଂ ମେଣ୍ଢାଛେଳି ପରି ସେମାନଙ୍କୁ ପୋଷନ୍ତି । ଓଟପକ୍ଷି-ପର ବଡ଼ ମୂଲ୍ୟବାନ୍—ୟୁରୋପର ଲୋକେ ଏଥିରେ ବେଶି ଗହଣାପତ୍ର କରନ୍ତି । ଉପଯୁକ୍ତ ସ୍ଥାନ ଦେଖି ଚାଷୀମାନେ କିଛି ଗହମ, ମକା ଆଦାୟ କରନ୍ତି; କିନ୍ତୁ ଅଧିକ ଭାଗରେ ପୟଃପ୍ରଣାଳୀ ଖୋଳିବା ଏକାବେଳକେ ଅସମ୍ଭବ । ଦାକ୍ଷିଣାତ୍ୟ ଭଳି, ଦକ୍ଷିଣ-ଆଫ୍ରିକାରେ ବର୍ଷା ହୁଏ ନାହିଁ କହିଲେ ଚଳେ । ଏହା ଏକ ଗୋଚର (pasture) ଦେଶ । ଏଠାରୁ ଲୋମ, ପଶୁଚର୍ମ, ମେଷଗବାଦି ଜନ୍ତୁର ଗଳିତ ଚର୍ବି (tallow), ଓଟପକ୍ଷିପର ଅନ୍ୟାନ୍ୟ ଦେଶକୁ ରପ୍ତାନି କରାଯାଏ ।

ନେଟାଲ୍‌ର ନିମ୍ନୋପକୂଳ ପ୍ରଦେଶଟିର କଥା ଅବଶ୍ୟ ସ୍ୱତନ୍ତ୍ର । ଭାରତର କୋଙ୍କାନ-ଉପକୂଳ ପ୍ରଦେଶ ସଙ୍ଗେ ଏହାର ଠିକ୍ ତୁଳନା କରାଯାଇ ପାରେ । ଏ ଉପକୂଳ ପ୍ରଦେଶରେ ଦକ୍ଷିଣ-ପୂର୍ବ ବାଣିଜ୍ୟ ବାୟୁ

ଯୋଗେ ଢେର ବୃଷ୍ଟି ହୁଏ ଏବ ଆଖୁ, ମକା, ଧୂଆଁପତ୍ର, କଦଳୀ ଓ ଅନ୍ୟାନ୍ୟ ଫଳ, ପନିପରିବା ଉତ୍ପନ୍ନ ହୁଏ । ଦକ୍ଷିଣୋପକୂଳର (ସମୁଦ୍ରକୁ ମୁଖ କରି ରହିଥିବା) ଢାଲୁ ଜାଗାରେ ଭୂମଧ୍ୟସାଗରୀୟ ଜଳବାୟୁ ଅନୁକୂଳ ହୁଏ, ଅନେକ ଦ୍ରାକ୍ଷାକ୍ଷେତ୍ର (vineyards) ଓ ଫଳବଗିଚ୍ଚ (orchards) ଦେଖାଯାଏ । ଏଠାର ଦ୍ରାକ୍ଷାରେ ଯେଉଁ ମଦ୍ୟ ତିଆରି ହୁଏ, ତାହା ଫ୍ରାନ୍ସ ଓ ସ୍ପେନ୍‌ର ମଦ୍ୟ ପରି ରୁଚିକର, ପୁଷ୍ଟିକର ନୁହେ ।

ଦକ୍ଷିଣ-ଆଫ୍ରିକା ୟୁନିୟନ୍ (Union of South Africa):—

ଦକ୍ଷିଣ-ଆଫ୍ରିକାର ଯେଉଁ ଭାଗଟି ବ୍ରିଟିଷ୍‌ସାମ୍ରାଜ୍ୟର ଅଧୀନ, ତାହା ଲିମ୍ପୋପୋ ନଦୀ ଦ୍ୱାରା ଦୁଇ ଭାଗରେ ବିଭକ୍ତ ହୋଇଅଛି । ଏ ନଦୀର ଉତ୍ତର ଭାଗରେ ରୋଡେସିଆ (Rhodesia); ଦକ୍ଷିଣ ଭାଗରେ ଦକ୍ଷିଣ-ଆଫ୍ରିକା-ୟୁନିୟନ୍‌ର ନିମ୍ନଲିଖିତ ପ୍ରଦେଶ ସକଳ ଅବସ୍ଥିତ;—Cape of Good Hope, Natal, The Orange Free State, The Transvaal, The New Protectorate of South West Africa.

ଆଫ୍ରିକାର ସମଗ୍ର ଦକ୍ଷିଣ ପ୍ରାନ୍ତଟି The Cape of Good Hope ପ୍ରଦେଶ—ଉତ୍ତରରେ ଅରେଞ୍ଜ ନଦୀ ପର୍ଯ୍ୟନ୍ତ ବିସ୍ତୃତ । ଏ ପ୍ରଦେଶଟି ଉଚ୍ଚ ଗୋଚର ଭୂମିରେ ପୂର୍ଣ୍ଣ । ଆଗେ ଏ ପ୍ରଦେଶଟି ଡଚ୍ ଜାତିର ଅଧୀନ ଥିଲା । ବର୍ତ୍ତମାନ ସୁଦ୍ଧା ଏଠାରେ ଡଚ୍ ବା ଡଚ୍ ବଂଶଧରମାନେ ବାସ କରନ୍ତି । ଏ ପ୍ରଦେଶରେ ଡଚ୍ ଓ ଇଂରେଜୀ ଭାଷା କଥିତ ହୁଏ ।

ନେଟାଲ୍ ଉପରୋକ୍ତ ପ୍ରଦେଶ ଅପେକ୍ଷା କ୍ଷୁଦ୍ରତର—ସମୁଦ୍ର ଓ ଉଚ୍ଚ ଡ୍ରେକେନ୍ସବେର୍ଗ ପର୍ବତଶ୍ରେଣୀ ମଧ୍ୟରେ ଅବସ୍ଥିତ । ସଂକୀର୍ଣ୍ଣ ଉପକୂଳ ପ୍ରଦେଶରେ ଯଥେଷ୍ଟ ବୃଷ୍ଟି ହୁଏ । ନେଟାଲ୍‌କୁ "ଦକ୍ଷିଣ-

ଅଫ୍ରିକାର ଉପବନ” (Garden of South Africa) କହନ୍ତି । ଏଠାରେ ଧାନ, ଅଖୁ, କଦଳୀ, ତମାଖୁ ଓ ସପୁରୀ ପନସ ଜନ୍ମେ । ଡାଲ୍ ସ୍ଥାନରେ ଗୃହ ହୁଏ । ଏହି ସମତଳ ପ୍ରଦେଶ ଉପରକୁ ଉଚ୍ଚ ମାଳଭୂମି । ଏହି ମାଳଭୂମିରେ ଗାଈ ଗୋରୁଙ୍କ ପାଇଁ ସୁନ୍ଦର ଚରାଭୂମି ଅଛି; ଏଠାରେ କିନ୍ତୁ କୃଷିଉପଯୋଗୀ ଯଥେଷ୍ଟ ବର୍ଷା ହୁଏ ନାହିଁ ।

The Orange Free State ଅରେଞ୍ଜନଦୀ ଓ ତାହାର ଉପନଦୀ The Vaal ମଧ୍ୟରେ ଅବସ୍ଥିତ । ଏହା ମାଳଭୂମିର ଏକ ଉଚ୍ଚ ଅଂଶ—ଦାକ୍ଷିଣାତ୍ୟ ଠାରୁ ଉଚ୍ଚ । ବର୍ଷର ଅଠ ମାସ କାଳ ଏଠାରେ ଅତ୍ୟଳ୍ପ ମାତ୍ର ବୃଷ୍ଟି ହୋଇଥାଏ । ଏଠାର କୃଷକମାନେ ଗାଈ ଗୋରୁଙ୍କର ଚରଣ (pasturing) ଉପରେ ସଂପୂର୍ଣ୍ଣ ନିର୍ଭର କରନ୍ତି । ୧୮୩୬ ସାଲରେ ଏଠାରେ ବୋଏର୍ ବା ଡଚ୍ ଜାତିର ପ୍ରଜାତନ୍ତ୍ର-ଶାସନ (republic) ପ୍ରଚଳିତ ଥିଲା, ପରେ ଏହା ବ୍ରିଟିଶ୍ ସାମ୍ରାଜ୍ୟରେ ସଂଯୁକ୍ତ ହେଲା; କିନ୍ତୁ ୧୮୫୪ରେ ଏହା ବୋଏର୍‌ମାନଙ୍କୁ ଫେରସ୍ତ ଦିଆଗଲା । ୧୯୦୦ରେ ଏ ରାଜ୍ୟ Transvaal ସଙ୍ଗେ ମିଶି ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ କରିବା ଫଳରେ ରାଜ୍ୟଟି ସେ ବର୍ଷ ବ୍ରିଟିଶ୍‌ସାମ୍ରାଜ୍ୟରେ ପୁଣି ସାମିଲ କରାଗଲା ।

Transvaal ମଧ୍ୟ ମାଳଭୂମିର ଗୋଟିଏ ଉଚ୍ଚ ଭାଗ । ବର୍ଷର ଅଧିକ ସମୟ ଏ ପ୍ରଦେଶଟି ପତଳା ଘାସରେ ଢାଙ୍କି ହୋଇ ରହେ । ଲିମ୍ପୋପୋ-ନିମ୍ନଭୂମିର ଉଭୟ ତଟରେ ଗରମ ଜଳବାୟୁ ଅନୁଭୂତ ହୁଏ । ଏଠାର ଡଚ୍ କୃଷକମାନଙ୍କୁ Boers ବୋଲାଯାଏ । ଏମାନଙ୍କର ପ୍ରଧାନ ବୃତ୍ତି ଗୋମେଷ-ପାଳନ ।

ଦକ୍ଷିଣ-ପଶ୍ଚିମ-ଆଫ୍ରିକା ଆଶ୍ରିତ ରାଜ୍ୟ (The South West Africa Protectorate:—

ଏହା ୟୁରୋପ-ଯୁଦ୍ଧ ପୂର୍ବେ ଜର୍ମାନର ଶାସନାଧୀନ ଥିଲା; କିନ୍ତୁ ବର୍ତ୍ତମାନ ଏହା ଦକ୍ଷିଣ-ଆଫ୍ରିକା-ୟୁନିଅନ୍‌ର ଅନ୍ତର୍ଗତ । ଏ ରାଜ୍ୟଟି

ଅରେଞ୍ଜନଦୀ ଠାରୁ ଉତ୍ତର ଦିଗରେ ବିସ୍ତୃତ । ଏହା ଏକ ଶୁଷ୍କ ପ୍ରଦେଶ; କାରଣ ଦକ୍ଷିଣ-ପୂର୍ବ ବାଣିଜ୍ୟବାୟୁ ଭୂମିଅତ୍ତି ବହେ । ଉପକୂଳ ଦିଗରୁ ମହାଦେଶ ଭିତରକୁ ଯିବାବେଳେ କଲହରି ମରୁଭୂମିର ସୀମାନ୍ତ (borders)ରେ ପହଞ୍ଚିବାକୁ ହୁଏ । ଏ ରାଜ୍ୟର ପ୍ରଧାନ ବନ୍ଦର Walfish (walvis) Bay. ଏ ବନ୍ଦରରୁ ଗୋଟିଏ ରେଳ-ମାର୍ଗ ଦକ୍ଷିଣ ଦିଗରେ ଯାଇ କେପ୍‌ଟାଉନ୍—ପ୍ରିଟୋରିଆମଧ୍ୟବର୍ତ୍ତୀ ପ୍ରଧାନ ରେଳପଥ ସଙ୍ଗେ ମିଶିଅଛି ।

ରୋଡିସିଆ (Rhodesia):—

ଲିମ୍ପୋପୋ ନଦୀର ଉତ୍ତର ଭାଗରେ ଆଉ ଗୋଟିଏ ବ୍ରିଟିଷ୍‌ରାଜ୍ୟ ଦେଖାଯାଏ । ଏ ରାଜ୍ୟର ପଶ୍ଚିମାଞ୍ଚଳଟି Bechuanaland Protectorate. ଏହାର ଅଧିକାଂଶ କଲହରିମରୁଭୂମିରେ ଆବୃତ; ଏଣୁ ଏଠାର ଜଳବାୟୁ ଅତ୍ୟନ୍ତ ଶୁଷ୍କ । ଏଠାରେ ସହର ଦେଖା ଯାଏ ନାହିଁ—ଅତ୍ୟଳ୍ପ ଲୋକ ବାସ କରନ୍ତି । ଏ ରାଜ୍ୟର ଅବଶିଷ୍ଟାଂଶକୁ 'ରୋଡିସିଆ' କହାଯାଏ । Rhodesiaର ଦକ୍ଷିଣରେ Transvaal, ଉତ୍ତରରେ କଙ୍ଗୋଷ୍ଟେଟ୍ ଓ ଟାଙ୍ଗାନିକାରାଜ୍ୟର ସୀମାନ୍ତ (borders). ଏହା ପୋର୍ତ୍ତୁଗୀଜ୍-ପୂର୍ବ-ଆଫ୍ରିକା ଦ୍ୱାରା ସାଗରୋପକୂଳରୁ ବିଚ୍ଛିନ୍ନ ହୋଇଅଛି । ଏହାର ଯେଉଁ ଭାଗଟି ଜାମ୍ବେସି ନଦୀର ଦକ୍ଷିଣରେ ଅବସ୍ଥିତ, ତାହାକୁ ଦକ୍ଷିଣ-ରୋଡିସିଆ ଏବଂ ଯେଉଁ ଭାଗଟି ଜାମ୍ବେସିର ଉତ୍ତରରେ ଅବସ୍ଥିତ, ତାହାକୁ ଉତ୍ତର-ରୋଡିସିଆ ବୋଲାଯାଏ । ଇଂରେଜୀ ରାଜନୀତିଜ୍ଞ Cecil Rhodesଙ୍କ ନାମାନୁସାରେ ଏ ରାଜ୍ୟର ନାମ ରଖାଯାଇଛି 'Rhodesia'. ୧୯୨୩ ସାଲରେ ଦକ୍ଷିଣ-ରୋଡିସିଆ ବ୍ରିଟିଷ୍-ସାମ୍ରାଜ୍ୟରେ ସାମିଲ୍ କରାଗଲା । ଉତ୍ତର-ରୋଡିସିଆ, ସିଂହଳ ଭଳି, ଗୋଟିଏ ପ୍ରତ୍ୟକ୍ଷଶାସନାଧୀନ ଉପନିବେଶ (Crown Colony.) ରୋଡିସିଆ ଏକ ଉଚ୍ଚ ମାଳଭୂମି—ମାଳଭୂମିଟି ତୃଣାଚ୍ଛନ୍ନ ପାହାଡ଼ରେ

ପୂର୍ଣ୍ଣ । ଏହା ଲିମ୍ପୋପୋ ଓ ଜାମ୍ବେସି ନଦୀ ଦ୍ୱାରା ପ୍ଲାବିତ । ଉଷ୍ଣବରେଖା ଓ ବହୁ-ବୃଷ୍ଟି-ମଣ୍ଡଳ (Heavy rain belt) ନିକଟରେ ଥିବାରୁ, ଏଠାର ତୃଣ ବହୁ ପରିମାଣରେ ସୁନ୍ଦର ବଢ଼େ—ନଦୀତଟରେ ବନ ଦେଖାଯାଏ । ରୋଡ଼ସିଆରେ କମ୍ ଲୋକ ବାସ କରନ୍ତି ଏବଂ ଲୋକେ ଗାଈ ଗୋରୁ ଚରାଇ, କିଛି ଜମା ଆଦାୟ କରି ଜୀବିକା ଚଳାନ୍ତି । ଏଠାରେ ଅନେକ ସୁନାଖଣି ଦେଖାଯାଏ, ଅନେକ ଖନିଜଦ୍ରବ୍ୟ ମିଳେ । Cape Townରୁ ଆରମ୍ଭ ହୋଇଥିବା ଲୌହବର୍ତ୍ମକିଟି ରୋଡ଼ସିଆର ଦୁଇ ଭାଗ ମଧ୍ୟରେ ୨୦୦୦ ମାଇଲ ବିସ୍ତୃତ ହୋଇଅଛି । ରେଳପଥଟି Bulawayo • ବାଟେ ଉତ୍ତର-ପଶ୍ଚିମ ଦିଗରେ ଯାଇ କଙ୍ଗୋ-ସୀମାକୁ ସ୍ପର୍ଶ କରୁଅଛି, ମାର୍ଗରେ ଜାମ୍ବେସି ନଦୀର ଭିକ୍ଟୋରିଆ-ପ୍ରପାତ ନିକଟସ୍ଥ ପୋଲ ଅତିକ୍ରମ କରି ଯାଇଅଛି । Bulawayo ଠାରୁ ରେଳମାର୍ଗର ଗୋଟିଏ ଶାଖା Salisbury ଯାଏଁ ଚାଲିଅଛି । ସାଲିସ୍‌ବରି ଦକ୍ଷିଣ-ରୋଡ଼ସିଆର ରାଜଧାନୀ । ଏଠାରୁ ଗୋଟିଏ ଶାଖା-ରେଳପଥ ବାହାରି (ପୋର୍ତୁଗୀଜ-ପୂର୍ବ-ଆଫ୍ରିକାର ବନ୍ଦର) Beiraକୁ ଯାଇଅଛି ।

ଦକ୍ଷିଣ-ଆଫ୍ରିକା-ୟୁନିୟନ୍‌ର ପ୍ରଧାନ ନଗର ଓ ବନ୍ଦର:—

ଦକ୍ଷିଣ-ଆଫ୍ରିକା ଭଳି ପଶୁଚାରଣ-ଦେଶରେ ବଡ଼ ବଡ଼ ସହର ବା ବ୍ୟବସାୟପ୍ରଧାନ ନଗର ଦେଖା ଯାଇ ନ ପାରେ । ଏ ଦେଶର ପ୍ରଧାନ ଅଧିବାସୀ ଜୁଲୁ ଓ କାଫିରଜାତି ପଲ୍ଲିରେ ଅତି ଛୋଟ, କଦର୍ଯ୍ୟ କୁଡ଼ିଆ କରି ରହିଥାନ୍ତି । ଏମାନଙ୍କର ପ୍ରଧାନ ବ୍ୟବସାୟ ଗାଈ ଗୋରୁ ଚରାଇବା, କିଛି ଜମା ଆଦାୟ କରିବା । ଏଠାରେ ଅତ୍ୟଳ୍ପ ପରିମାଣରେ ଶସ୍ୟ ଓ ଖାଦ୍ୟପଦାର୍ଥ ଉତ୍ପନ୍ନ ହୁଏ; ଅତଏବ ଏଠାର ଜନସଂଖ୍ୟା ନିହାତି କମ୍ । ଏଠା ଅଧିବାସିଙ୍କର ଏକ ଚତୁର୍ଥାଂଶ ୟୁରୋପୀୟ—ପ୍ରଧାନତଃ ଡଚ୍ ଓ ଇଂରେଜ । ଦକ୍ଷିଣ-ଆଫ୍ରିକାର ସହରମାନଙ୍କ ମଧ୍ୟରେ

Cape Town, Port Elizabeth East London, ଓ Durban ଅତି ପ୍ରଧାନ, ବିଶେଷ ଉଲ୍ଲେଖଯୋଗ୍ୟ । ୟୁନିଅନ୍‌ର ରାଜଧାନୀ, ପ୍ରଧାନ ବନ୍ଦର କେପ୍‌ଟାଉନ୍—Table Bay ଉପରେ, Table ପର୍ବତର ପାଦ ଦେଶରେ ଅବସ୍ଥିତ । ସ୍ଥିତି (Position)ଯୋଗେ Cape Townର ପ୍ରାଧାନ୍ୟ । ଆଟ୍‌ଲାଣ୍ଟିକ୍ ଓ ଭାରତ ମହାସାଗର ମଧ୍ୟରେ ଯାତାୟାତ କରିବା ସମସ୍ତ ଜାହାଜ ଏ ବନ୍ଦରରେ ବିଶ୍ରାମ ନେଇଥାଏ ଏବଂ ଇଂଲଣ୍ଡରୁ ଦକ୍ଷିଣ-ଆଫ୍ରିକା ଓ ଅଷ୍ଟ୍ରେଲିଆକୁ ଆସିବା ଡ଼ାକ-ଜାହାଜ (mail steamer) ସବୁ ଏଠାରେହିଁ ରହିଥାଏ । କେପ୍‌ଟାଉନ୍‌ରେ ୟୁନିଅନ୍‌ର ପ୍ରାୟ ସମସ୍ତ ସମୁଦ୍ର-ବାଣିଜ୍ୟ ଚଳେ । ଏଠାରୁ ବିଦେଶକୁ ଲୋମ, ଓଟପକ୍ଷିପର, ଗୋଚରଭୂମିଜାତ ଦ୍ରବ୍ୟ, ଗୋପାଳନ-ଗବ୍ୟ-କାରଖାନା (dairy)ରେ ତିଆରି ହେବା ଖାଦ୍ୟପଦାର୍ଥ, ମଦର୍‌, ସୁନା, ତମ୍ବା ଓ ହୀରା ପଠାଯାଏ । ଇଂଲଣ୍ଡ ଓ ୟୁରୋପରୁ କପା, ଲୁହା ଓ ଇସ୍ପାତ ତିଆରି ଜିନିଷ ଏବଂ କଳକାରଖାନାର ବିବିଧ ଉପକରଣ ଏ ବନ୍ଦରକୁ ଆସିଥାଏ । ଏ ସବୁ ଜିନିଷ ଏହି ସହରଠାରୁ ରେଳମାର୍ଗରେ ମହାଦେଶ ମଧ୍ୟକୁ ପଠାନ୍ତି । ଏଠାର ପ୍ରଧାନ ରେଳପଥଟି ପର୍ବତର ଡାଲୁଜାଗା ଉପରେ ନିର୍ମିତ ହୋଇଅଛି ।

ପୋର୍ଟ ଏଲିଜାବେଥ୍ ଓ ଇଷ୍ଟ ଲଣ୍ଡନ୍‌ରେ ମଧ୍ୟ ଖୁବ୍ ବାଣିଜ୍ୟ ବ୍ୟବସାୟ ଚଳେ । ନେଟାଲ୍‌ର ବନ୍ଦର ଦର୍‌ବନ୍ (Durban) ଗୋଟିଏ କୋଇଲା-ଷ୍ଟେସନ୍ । ନ୍ୟୁକ୍ୟାସଲ୍ (New Castle) ବଡ଼ ବଡ଼ କୋଇଲା-ଖଣିରେ ପୂର୍ଣ୍ଣ । ଏଠାର କେତେକ କୋଇଲା ଆମ ଦେଶକୁ ଆସେ । ଏ ଦୁଇ ବନ୍ଦରରୁ ପ୍ରଧାନ ରେଳପଥ ସବୁ ବାହାର ମାଳଭୂମି ଉପରେ ଯାଉଅଛି । ଅରେଞ୍ଜ ଫ୍ରିଷ୍ଟେଟ୍‌ର ପ୍ରଧାନ ସହର Bloemfontein—ପ୍ରଦେଶର କେନ୍ଦ୍ରଭାଗରେ ଅଛି । ଏହା ରେଳମାର୍ଗର

ମିଳନ-ସ୍ଥଳ । ଏ ସହରର ଉପକଣ୍ଠରେ ଥିବା କୃଷକମାନେ ଏଠାରେ ଆସି ଗାଈ ଗୋରୁ ବିକନ୍ତି, ବିଦେଶୀ ମାଲ କିଣି ନିଅନ୍ତି । Transvaalର ପ୍ରଧାନ ନଗର ପ୍ରିଟୋରିଆ ମଧ୍ୟ ରେଳପଥର ମିଳନ-ସ୍ଥାନ । ୟୁନିଅନ୍‌ର ପ୍ରାୟ ସମସ୍ତ ଅଭ୍ୟନ୍ତରୀଣ (inland) ସହରରେ ସମସ୍ତ ଗୋଚର-ଜାତ ଜିନିଷ ବିକ୍ରି ହୋଇଥାଏ ।

ଦକ୍ଷିଣ-ଆଫ୍ରିକାରେ ବେଶି ଖଣିଜ ପଦାର୍ଥ ମିଳେ । ପୃଥିବୀର ବୃହତ୍ତମ ସୁନାଖଣି ସବୁ Transvaalରେ ଦେଖାଯାଏ। Pretoriaର ଦକ୍ଷିଣ ଭାଗରେ Rand ନାମକ ଗୋଟିଏ ପାହାଡ଼ମାଳା ଅଛି । ସେଠାରେ ଭୂମିତଳେ ଅନେକ ପ୍ରସ୍ତର (rocks) ବହୁ ଦୂର ବିସ୍ତୃତ ହୋଇଅଛି । ଏ ସମସ୍ତ ପ୍ରସ୍ତରରୁ ସମପରିମାଣରେ ସୁନା ବାହାର କରାଯାଏ । ଜୋହାନେସ୍‌ବର୍ଗ (johannesburg) ଦକ୍ଷିଣ-ଆଫ୍ରିକାର ବୃହତ୍ତମ, ଅତିବାଣିଜ୍ୟପ୍ରଧାନ ନଗରୀ । ଏହା (ମହୀଶୂରର) କୋଲାର୍ ଅପେକ୍ଷା ବୃହତ୍ତର ଏବଂ ଏଠାର ସୁନାଖଣି ସବୁ Kolar ଖଣି ଠାରୁ ବଡ଼ । କେପ୍‌ଟାଉନ୍‌ରୁ ଜୋହାନେସ୍‌ବର୍ଗ ପର୍ଯ୍ୟନ୍ତ ବିସ୍ତୃତ ରେଳମାର୍ଗଟି Kimberly ବାଟେ ଯାଇଅଛି । କିମ୍ବେରଲି ହେଉଛି ଜଗତର ସର୍ବୋତ୍କୃଷ୍ଟ, ବୃହତ୍ତମ ହୀରକ-ଖନନ-କେନ୍ଦ୍ର (diamond mining centre) । ଜୋହାନେସ୍‌ବର୍ଗ (ସୁନା), କିମ୍ବେର୍‌ଲି (ହୀରା) ଓ ନ୍ୟୁକ୍ୟାସଲ୍ (କୋଇଲା), ଏ ତିନିଗୋଟି ସହର ହେଉଛି ୟୁନିଅନ୍‌ର ପ୍ରଧାନ ଖନନ-ବ୍ୟବସାୟ-ସ୍ଥାନ (mining places) । ଅଳ୍ପ ଦିନ ହେଲା ଏ ତିନି ସହରରେ Platinum ନାମକ ଅଶୁଭ୍ର ଧାତୁ ବାହାର କରା ଯାଉଅଛି ।

ପ୍ରଶ୍ନ:—. ଦକ୍ଷିଣ-ଆଫ୍ରିକାର ଜନସଂଖ୍ୟା ଅତି କମ୍ ହେବାର କାରଣ କଣ ?

ଦକ୍ଷିଣ-ଆଫ୍ରିକାର ବ୍ୟବସାୟ ବର୍ଣ୍ଣନ କର ।



## ଦ୍ୱିତୀୟ ଭାଗ

## ଉତ୍ତର ଓ ଦକ୍ଷିଣ ଅମେରିକା

### ୧ ନୂତନ ଜଗତ

ନୂତନ ଜଗତ ଦୁଇ ଭାଗରେ ବିଭକ୍ତ—ଉତ୍ତର ଅମେରିକା, ଦକ୍ଷିଣ ଅମେରିକା । ଭାରତ ଦିଗରୁ ଦେଖାଯାଏ, ନୂତନ ଜଗତଟି ଗୋଲକର ଅପର ବା ବିପରୀତ ପାର୍ଶ୍ୱରେ ଅବସ୍ଥିତ । ବ୍ରିଟିଶସାମ୍ରାଜ୍ୟମଧ୍ୟରେ ୮୦ ଡିଗ୍ରି ପୂର୍ବ ଦ୍ରାଘିମା ଏବଂ ଉତ୍ତର ଅମେରିକାର ମଧ୍ୟଭାଗରେ ୧୦୦ ଡିଗ୍ରି ପଶ୍ଚିମ ଦ୍ରାଘିମା ଭେଦ କରି ଯାଇଅଛି । ଏଣୁ ଗୋଲକ-ଉପରି ଭାଗର ଏକ ଅର୍ଦ୍ଧାଂଶ ଏ ଦୁଇ ଦ୍ରାଘିମା ମଧ୍ୟରେ ଅବସ୍ଥିତ । ଉତ୍ତର ଓ ଦକ୍ଷିଣ ଅମେରିକାକୁ ଏସିଆରୁ ଯିବାବେଳେ ସୁବିଶାଳ ପ୍ରଶାନ୍ତ ମହାସାଗରରେ ସୁଦୀର୍ଘ ଯାତ୍ରା କରିବାକୁ ହୁଏ—ୟୁରୋପ ବା ଆଫ୍ରିକାରୁ ଯିବା ବେଳେ ଆଟ୍ଲାଣ୍ଟିକ୍ ମହାସାଗରରେ ଅପେକ୍ଷାକୃତ କମ୍ ମାର୍ଗ ଯାତ୍ରା କରିବାକୁ ହୁଏ ।

ଉତ୍ତର ଅମେରିକା ତ୍ରିକୋଣାକୃତି ଏକ ଭୂମିଖଣ୍ଡ—ଉତ୍ତର ଭାଗ ବିସ୍ତୃତ, ଦକ୍ଷିଣ ଭାଗଟି ସଂକୀର୍ଣ୍ଣ । ଏହାର ଉତ୍ତର ଭାଗଟି ଅନେକ ଦ୍ୱୀପରେ ବିଭକ୍ତ ହୋଇଅଛି । ଟେହୁଆନ୍‌ଟେପେକ୍ ସଂଯୋଜକକୁ (Isthmus of Tehuantepec) ଉତ୍ତର ଅମେରିକାର ଦକ୍ଷିଣ ସୀମା ବୋଲି ଧରି ଯାଇ ପାରେ । ଏ ମହାଦେଶଟି ସୁମେରୁଠାରୁ କର୍କଟରେଖାମଣ୍ଡଳର ୨୦ ଡିଗ୍ରି ପର୍ଯ୍ୟନ୍ତ ବିସ୍ତୃତ । ଏ ମହାଦେଶର ଅଧିକାଂଶ ସମଶୀତୋଷ୍ଣମଣ୍ଡଳରେ (temperate Zone) ଦେଖା ଯାଏ । ପଶ୍ଚିମରେ, ସଂକୀର୍ଣ୍ଣ ଓ ଅଗଭୀର ବେରିଂ ପ୍ରଣାଳୀ (Bering strait) ଉତ୍ତର ଅମେରିକାକୁ ଏସିଆଠାରୁ ପୃଥକ୍ କରିଅଛି । ପୂର୍ବରେ, ଏ ମହାଦେଶ ଗ୍ରୀନ୍‌ଲାଣ୍ଡ୍, ଆଇସ୍‌ଲାଣ୍ଡ୍ ଇତ୍ୟାଦି ଦ୍ୱୀପ ଦ୍ୱାରା ୟୁରୋପ ସହିତ ସଂଯୁକ୍ତ । ମଧ୍ୟ-ଅମେରିକା (Central America) ଓ ସଂକୀର୍ଣ୍ଣ

ପାନାମା ସଂଯୋଜକ (Isthmus of Panama)— ଏ ବର୍ତ୍ତିଛି ଯେପରି ଉ: ଓ ଦ: ଅମେରିକା ମଧ୍ୟବର୍ତ୍ତୀ ଗୋଟାଏ ଭୂମି-ପୋଲ (land bridge)

ଉତ୍ତର-ଅମେରିକାର ଦକ୍ଷିଣ-ପୂର୍ବ ଦିଗରେ ଦକ୍ଷିଣ-ଅମେରିକା । ମଧ୍ୟ-ଅମେରିକା ଓ West Indies ଉଭୟ ଅମେରିକାକୁ ଏକତ୍ର ମିଶାଉଅଛି । Falkland, The South Orkneys, South Shetland ଇତ୍ୟାଦି ଦ୍ୱୀପପୁଞ୍ଜ ଦ୍ୱାରା ଦକ୍ଷିଣ ଅମେରିକା କୁମେରୁ ମଣ୍ଡଳ ସହିତ ସଂଯୁକ୍ତ ହୋଇଅଛି । ଏହା ଉତ୍ତର ଲଘିମା ୧୨ ଡିଗ୍ରି ଠାରୁ ଦକ୍ଷିଣ ଲଘିମା ୫୪ ପର୍ଯ୍ୟନ୍ତ ବିସ୍ତୃତ । ଏହାର ଅନେକ ଭାଗ ଗ୍ରୀଷ୍ମ-ମଣ୍ଡଳରେ ଦେଖାଯାଏ । ଅଫ୍ରିକା କିମ୍ବା ଅଷ୍ଟ୍ରେଲିଆ ଅପେକ୍ଷା ଏ ମହାଦେଶଟି ଦକ୍ଷିଣ ଦିଗରେ ଅଧିକ ଦୂର ବିସ୍ତୃତ । ଏହା ଉତ୍ତର-ଅମେରିକା ପରି ପ୍ରାୟ ତ୍ରିକୋଣାକୃତି । ତେବେ ଏ ଦୁଇ ମହାଦେଶ ମଧ୍ୟରେ ଗୋଟିଏ ବିଷୟରେ ବିସ୍ତର ପ୍ରଭେଦ ଦେଖାଯାଏ । ଉତ୍ତର ଅମେରିକା ସମଶୀତୋଷ୍ଣ ଲଘିମାରେ ଖୁବ୍ ଓସାର ଏବଂ ଗ୍ରୀଷ୍ମମଣ୍ଡଳ ଆଡ଼କୁ କ୍ରମସୂକ୍ଷ୍ମ (tapering) ହୋଇ ଯାଇଅଛି । ଦକ୍ଷିଣ ଅମେରିକା ବିଷୁବରେଖା-ପ୍ରଦେଶରେ ବଡ଼ ଓସାର ଏବଂ ମେରୁମଣ୍ଡଳ ଦିଗରେ କ୍ରମେ ସଂକୀର୍ଣ୍ଣ ହୋଇ ଯାଇଅଛି ।

ପ୍ରାଚୀନ କାଳରେ ମଧ୍ୟ ଭୂମଧ୍ୟସାଗର ମାର୍ଗରେ ୟୁରୋପ୍ ଏସିଆ ସଙ୍ଗେ ବାଣିଜ୍ୟ ଚଳାଉଥିଲା । କିନ୍ତୁ ୧୪୫୩ ସାଲରେ ତୁର୍କିମାନେ କନଷ୍ଟାଣ୍ଟିନୋପଲ୍ ଓ ମିଶରଦେଶ ଅଧିକାର କରି ନେବାରୁ, ଏ ମାର୍ଗରେ ପ୍ରାଚ୍ୟ ଜଗତ ସଙ୍ଗେ ବାଣିଜ୍ୟ ଚଳାଇବା ପ୍ରତୀଚ୍ୟ ଜଗତ ପକ୍ଷରେ ଏକ ପ୍ରକାର ଅସମ୍ଭବ ହୋଇ ପଡ଼ିଲା । ୧୪୫୩ ପୂର୍ବେ ଭୂମଧ୍ୟସାଗର ପଥରେ ବିବିଧ ମସଲା, ବହୁମୂଲ୍ୟ ପ୍ରସ୍ତର, ସୁନା, ରୁପା, ହାତୀଦାନ୍ତ ଇତ୍ୟାଦି ଜିନିଷର କାରବାର ଚାଲିଥାଏ । ଏ ବେପାର ୟୁରୋପର

କେତେ ଯେ ଉପକାର କରୁଥିଲା, ଏହା ଏଥିରୁ ସ୍ପଷ୍ଟ ବୁଝି ପାରୁଛ । ଭୂମଧ୍ୟସାଗର ପଥଟି ତୁର୍କିର ହସ୍ତଗତ ହୋଇ ପଡ଼ିବାରୁ, ପାଶ୍ଚାତ୍ୟ ଜଗତର (ୟୁରୋପର) ବଣିକମାନେ ଭାରତକୁ (Indies) ଆସିବାପାଇଁ ଅନ୍ୟାନ୍ୟ ଜଳମାର୍ଗ ଖୋଜି ବାହାର କଲେ । ୧୪୯୭ ସାଲରେ ଭାସ୍କୋ ଡା ଗାମା Cape of Good Hope ମାର୍ଗରେ ଭାରତକୁ ଆସିଲେ । ତେବେ ଏହାର ପ୍ରାୟ ପାଞ୍ଚବର୍ଷ ଆଗରୁ, ଭାରତକୁ ଆସିବା ନିମନ୍ତେ ଅନ୍ୟ ମାର୍ଗ ଆବିଷ୍କାର କରିବା ଉଦ୍ଦେଶ୍ୟରେ ଖ୍ରୀଷ୍ଟଫର୍ କଲମ୍ବସ୍ ପଶ୍ଚିମ ଦିଗରେ ଆଟ୍‌ଲାଣ୍ଟିକ୍ ମହାସାଗର ବକ୍ଷରେ ଯାତ୍ରା କରିଥିଲେ । ସେ ସେହି ସମୟର ଏକ ମାନଚିତ୍ର ଦେଖି ସ୍ଥିର କରିଥିଲେ ଯେ, ଜାପାନ ଓ କାନାରି (Canary) ଦ୍ୱୀପ ଏକ ଲମ୍ବିମାରେ ଅବସ୍ଥିତ । ଜାପାନ ପ୍ରାୟ ୨୫୦୦ ମାଇଲ ଦୂର ବୋଲି ତାଙ୍କର ଧାରଣା ଥିଲା । ଏଣୁ ୧୪୯୨ ସାଲରେ କଲମ୍ବସ୍ ସ୍ପେନ୍‌ରୁ ଯାତ୍ରାରମ୍ଭ କରି ବାଣିଜ୍ୟ-ବାୟୁ-ମଣ୍ଡଳରେ ଜାହାଜ ଚଳାଇଲେ । ବାୟୁ ପ୍ରବାହରେ ଭାସି ତାଙ୍କ ଜାହାଜଟି West Indiesରେ ଯାଇ ପହଞ୍ଚିଲା । କଲମ୍ବସଙ୍କ ଯାତ୍ରାର ଏକ ମାତ୍ର ଲକ୍ଷ୍ୟ ଥିଲା ଭାରତ । ଆମେରିକାର ଏହି ସ୍ଥାନରେ ପହଞ୍ଚିବା ମାତ୍ରକେ ତାଙ୍କ ମନରେ ଭୁଲ ଧାରଣା ଜନ୍ମିଲା ଯେ, ଏହାହିଁ ପ୍ରକୃତ ଭାରତବର୍ଷ । ତାଙ୍କର ଏହି ଭ୍ରାନ୍ତଧାରଣାର ସ୍ମୃତିରକ୍ଷାର୍ଥେ ଆମେରିକାର ଏହି ସ୍ଥାନର ବା ଦ୍ୱୀପର ନାମ ରଖା ଯାଇଛି "West Indies' ଏବଂ ଏ ଦ୍ୱୀପର ଲୋକଙ୍କୁ କହନ୍ତି 'Red Indians'. ସେ ଦିନ ଠାରୁ ୟୁରୋପର ଅନେକ ନାବିକ, ପର୍ଯ୍ୟଟକ ନୂତନ ଜଗତକୁ ଯିବାକୁ ଲାଗିଲେ ।

୧୪୯୭ରେ Cabot ନାମକ ଜଣେ ନାବିକ ବ୍ରିଷ୍ଟଲ୍‌ରୁ ଯାତ୍ରାରମ୍ଭ କଲେ ଏବଂ ଉତ୍ତର-ପଶ୍ଚିମ ଦିଗରେ ଯାଇ Newfound-land ଆବିଷ୍କାର କଲେ । ସେ ତାଙ୍କ ଜୀବନରେ ଏହି ସ୍ଥାନଟି (land)

ନୂଆ କରି (new) ଦେଖିଥିଲେ (found) ବୋଲି, ଏହାର ନାମ ରଖିଲେ Newfoundland (land newly found). ୧୪୯୯ ଯାଏଁ ନୂତନ ଜଗତକୁ କୌଣସି ନାମ ଦିଆ ଯାଇ ନ ଥିଲା; କିନ୍ତୁ ସେହି ସାଲ Amerigo Vespuci ନାମକ ଜଣେ ଫ୍ଲୋରେନ୍ସବାସୀ ନୂତନ ଜଗତ ପରିଦର୍ଶନ କରି ଗଲେ ଏବଂ ସେଠାରୁ ବାହୁଡ଼ି ତାଙ୍କ ନାମାନୁସାରେ ଏହି ନବାବିଷ୍କୃତ ପୃଥିବୀର 'ଅମେରିକା' ନାମ ପ୍ରଚଳିତ କଲେ। ୧୫୧୯ ସାଲରେ Magellan ଅମେରିକା ଯାଇ ଉତ୍ତମାଶା ଅନ୍ତରୀପ ମାର୍ଗରେ ଫେରିଲେ। ୧୬୧୩ରେ Hudson ନାମକ ଜଣେ ଓଲନ୍ଦାଜ ଦେଶର ବାଣିଜ୍ୟ ବଢ଼ାଇବା ପାଇଁ ଅମେରିକା ଯାତ୍ରା କରି ବିସ୍ତୃତ Hudson ନଦୀରେ ଯାଇ ପହଞ୍ଚିଲେ। ତାଙ୍କର ନାମାନୁସାରେ ନଦୀର ଏହି ନାମ ରଖାଗଲା।

ଦକ୍ଷିଣ-ଆମେରିକା ବିଶେଷତଃ ସ୍ପେନ୍‌ବାସୀ (Spaniards) ଓ ପୋର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା। ସ୍ପେନର ଲୋକେ ମଧ୍ୟ-ଆମେରିକା ଆବିଷ୍କାର କରିଥିଲେ। ସ୍ପେନ୍ ଓ ପୋର୍ତ୍ତୁଗଲର ଅନେକ ଲୋକ ଏ ଦୁଇ ସ୍ଥାନରେ ସ୍ଥାୟୀ ଅଧିବାସୀ ହୋଇ ରହିଲେ। ଫରାସି-ମାନେ ସର୍ବ ପ୍ରଥମରେ St. Lawrence ନଦୀ ଦେଖି ତାହାର ମୁହାଣ ଦଖଲ କରି ନେଲେ। ଏହି ନଦୀ ତୀରବର୍ତ୍ତୀ Quebec ସହର Champlainଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା।

ଆଜକୁ ୪୫୬ ବର୍ଷ ତଳେ ୟୁରୋପୀୟମାନେ ଆମେରିକା ସମ୍ବନ୍ଧରେ କିଛି ଶୁଣି ନ ଥିଲେ କିମ୍ବା ଜାଣି ନ ଥିଲେ। ସେତେବେଳେ ମହାଦେଶଟି ନିବିଡ଼ ବନଜଙ୍ଗଲ ଓ ସମତଳ ପ୍ରଦେଶରେ ପୂର୍ଣ୍ଣ ଥିଲା ଏବଂ ଅସଭ୍ୟ ଶିକାରୀମାନେହିଁ ସେଠାରେ ବାସ କରୁଥିଲେ। ୧୪୯୨ ସାଲ ପରେ ୟୁରୋପର ହଜାର ହଜାର ଲୋକ, ଅନେକ ଆଫ୍ରିକାବାସୀ ଏବଂ ଏସିଆର ଅଳ୍ପ କେତେକ ଜଣ ଲୋକ ମହାସାଗର ଉତ୍ତୀର୍ଣ୍ଣ ହୋଇ ଏହି

ନୂତନ ପୃଥିବୀରେ ସ୍ଥାୟୀ ବସତି ସ୍ଥାପନ କଲେ । ଉତ୍ତର-ୟୁରୋପର, ପ୍ରଧାନତଃ ଇଂରେଜ, ଫରାସି ଓ ଜର୍ମନ୍‌ମାନେ ଉତ୍ତର-ଆମେରିକାରେ ଯାଇ ଉପନିବେଶ କରି ରହିଲେ । ଆଫ୍ରିକାର ନିଗ୍ରୋମାନେ ଆମେରିକାକୁ କ୍ରୀତଦାସ ରୂପେ ନୀତ ହେଲେ ।

ହଡ୍‌ସନ୍ ନଦୀ ନିକଟରେ ଡଚ୍‌ଜାତିର ଉପନିବେଶ ଥିଲା । କିନ୍ତୁ ଏହା ପରେ ବ୍ରିଟିଶ୍‌ର ହସ୍ତଗତ ହେଲା । ୧୬୮୭ ପରେ ବ୍ରିଟିଶ୍ ଜାତି ସାଗରୋପକୂଳରେ, **Florida** ଓ **St Lawrence** ମଧ୍ୟବର୍ତ୍ତୀ ପ୍ରଦେଶରେ ଅନେକ ଉପନିବେଶ ଖୋଲିଲେ ଏବଂ ସମୁଦ୍ର ଓ **Appalachian** ମଧ୍ୟବର୍ତ୍ତୀ ନିମ୍ନଭୂମି ସକଳ ଦଖଲ କଲେ । କାଳକ୍ରମେ ଆମେରିକାରେ ଫରାସି ଓ ବ୍ରିଟିଶ୍‌ଜାତି ମଧ୍ୟରେ ଭୟଙ୍କର ସଂଘର୍ଷଣ ଉପସ୍ଥିତ ହେଲା । ଫଳତଃ ୧୭୫୯ରେ କ୍ୱିବେକ୍ ଅଧିକୃତ ହେଲା ଏବଂ ୧୭୬୩ରେ ସମଗ୍ର କାନାଡ଼ା ଗ୍ରେଟ୍‌ବ୍ରିଟେନ୍‌ର ଅଧୀନ ହୋଇ ପଡ଼ିଲା । ଯେଉଁ ଆମେରିକା ପ୍ରାଚୀନ କାଳରେ ଘୋର ଅନ୍ଧକାରରେ ବୁଡ଼ି ରହିଥିଲା, ସେହି ସ୍ଥାନ ବର୍ତ୍ତମାନ ଜଗତରେ ସର୍ବୋତ୍କୃଷ୍ଟ, ଅତି ସଭ୍ୟ, ଅତିଶିକ୍ଷିତ ଓ ଧନୀ ମହାଦେଶ ହୋଇ ଉଠିଅଛି ।

ସପ୍ତଦଶ ଶତାବ୍ଦୀରେ, ଉପକୂଳ ପ୍ରଦେଶରେ—କାନାଡ଼ା ରାଜ୍ୟ ଓ ଫ୍ଲୋରିଡା ମଧ୍ୟରେ—ବ୍ରିଟିଶ୍, ଡଚ୍, ଜର୍ମନ୍ ଓ ସ୍ୱିଡିଷ୍ (**Swedish**) ମାନଙ୍କର ଅନେକ ଉପନିବେଶ ପ୍ରତିଷ୍ଠିତ ହେଲା । ହଡ୍‌ସନ୍ ନିମ୍ନଭୂମିର ପୂର୍ବଭାଗସ୍ଥ ବର୍ତ୍ତମାନ ସ୍ଥାନ **'New England'** ନାମରେ ପରିଚିତ । ଅଷ୍ଟାଦଶ ଶତାବ୍ଦୀରେ ଏ ସମସ୍ତ ଉପନିବେଶ ବ୍ରିଟିଶ୍‌ର ଅଧୀନ ହେଲା । ୧୭୭୬ ସାଲରେ ତେରଗୋଟି ରାଜ୍ୟ (**states**) ସ୍ୱାଧୀନତା ଘୋଷଣା କଲା । ଏ ସମସ୍ତ ରାଜ୍ୟକୁ ନେଇ 'ଯୁକ୍ତରାଜ୍ୟ' (**United States of America**) ଗଠିତ ହେଲା । ପରେ ଅନ୍ୟାନ୍ୟ କେତୋଟି ରାଜ୍ୟ ଗଠିତ ହୋଇ ଯୁକ୍ତ ରାଜ୍ୟରେ ମିଶିଲେ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ

ମିସିସିପି ନଦୀ-ପଶ୍ଚିମବର୍ତ୍ତୀ ସମସ୍ତ ସମତଳ ପ୍ରଦେଶ ଫ୍ରାନ୍ସଠାରୁ କ୍ରୀତ ହେଲା । (ସେତେବେଳେ ଏ ପ୍ରଦେଶର ନାମ ଥିଲା Louisiana) । ଏହାର କିଛି ଦିନ ପରେ Rockies ଓ ପ୍ରଶାନ୍ତ ମହାସାଗର ମଧ୍ୟବର୍ତ୍ତୀ ସମଗ୍ର ଉତ୍ତର-ପଶ୍ଚିମ ପ୍ରଦେଶ ଅଧିକୃତ ହେଲା । ପରେ ସ୍ପେନ୍ ଫ୍ଲୋରିଡ଼ା ଛାଡ଼ି ଦେଲା । ୧୯ଶ ଶତାବ୍ଦୀର ପ୍ରାୟ ମଧ୍ୟ ଭାଗରେ ଦକ୍ଷିଣ-ପଶ୍ଚିମ ପ୍ରଦେଶ ମେକ୍ସିକୋ ଓ ସ୍ପେନ ହାତରୁ ଏବଂ ଅଲାସ୍କା (Alaska) ଋଷିଆ ହାତରୁ ଖସିଆସିଲା । ଗତ ଶତାବ୍ଦୀର ଶେଷ ଭାଗରେ Hawaii, the Philippines ଓ Port Rico ଯୁକ୍ତରାଜ୍ୟର ଶାସନାଧୀନ ହେଲା ।

ଯୁକ୍ତରାଜ୍ୟରେ ବର୍ତ୍ତମାନ ପ୍ରଜାତନ୍ତ୍ର ଶାସନ ପ୍ରବର୍ତ୍ତିତ । ଏହା ୪୬ ଗୋଟି ଷ୍ଟେଟ୍‌ରେ ବିଭକ୍ତ । ପ୍ରତ୍ୟେକ ଷ୍ଟେଟ୍‌ରେ ସ୍ୱତନ୍ତ୍ର ଶାସନ (Government) ପ୍ରଚଳିତ । ଏହି ସମସ୍ତ ଷ୍ଟେଟ୍‌ର ସମ୍ମିଳିତ ଶାସନକୁ 'Federal Government' କୁହାଯାଏ । ପ୍ରତି ଚାରି ବର୍ଷରେ ଥରେ ଯୁକ୍ତରାଜ୍ୟର ଜଣେ ଜଣେ ପ୍ରେସିଡେଣ୍ଟ ନିର୍ବାଚିତ ହୁଅନ୍ତି ।

ଅଲାସ୍କାକୁ ମିଶାଇ ଯୁକ୍ତରାଜ୍ୟର କ୍ଷେତ୍ରଫଳ (area) ୩୬ ଲକ୍ଷ ବର୍ଗ ମାଇଲ ଏବଂ ଜନସଂଖ୍ୟା ଦଶକୋଟି ପଚିଶଲକ୍ଷ । ଜନସଂଖ୍ୟାର ପ୍ରାୟ ଏକକୋଟି ନିଗ୍ରୋଜାତି । ପ୍ରତିବର୍ଷ ଅଷ୍ଟ୍ରିୟା, ହଙ୍ଗେରି, ଋଷିଆ ଓ ଇଟାଲିର ଅନେକ ଲୋକ ଯୁକ୍ତରାଜ୍ୟରେ ଯାଇ ରହନ୍ତି ।

ପ୍ରଶ୍ନ:—ନୂତନ ଜଗତ କେବେ କିପରି ଆବିଷ୍କୃତ ହୋଇଥିଲା ?

ଉତ୍ତର ଓ ଦକ୍ଷିଣ ଆମେରିକାର ସ୍ଥିତି ନିର୍ଦ୍ଦେଶ କର ।

ଯୁକ୍ତରାଜ୍ୟ କେବେ କିପରି ଗଠିତ ହେଲା ?

# ୬ ଆମେରିକାର ଗଠନ ଓ ଆକୃତି

ଉତ୍ତର ଓ ଦକ୍ଷିଣ ଆମେରିକାର ଆକୃତି ପ୍ରାୟ ସମାନ—ଦୁଇଟିଯାକ ପ୍ରାୟ ତ୍ରିକୋଣାକୃତି । ପ୍ରତ୍ୟେକ ମହାଦେଶର ବିସ୍ତୃତ ଭାଗଟି ଉତ୍ତର ଦିଗରେ ଅବସ୍ଥିତ ଏବଂ ପ୍ରତ୍ୟେକ ମହାଦେଶ ଦକ୍ଷିଣ ଦିଗକୁ କ୍ରମସଂକ୍ଷିପ୍ତ ହୋଇ ଯାଇଅଛି । ଉତ୍ତର ଆମେରିକାର ସାଗରୋପକୂଳ ଅଧିକ ଭଗ୍ନ, ବକ୍ର । ଅଳ୍ପ କେତୋଟି ମାତ୍ର ସାଗର-ଭୁଜ ଦକ୍ଷିଣ ଆମେରିକାରେ ପ୍ରବେଶ କରିଅଛି । ଏସିଆରେ ଉଚ୍ଚଭୂମି ସବୁ ସାଧାରଣତଃ ପୂର୍ବ ଓ ପଶ୍ଚିମ ଦିଗରେ ବିସ୍ତୃତ । ଆମେରିକାରେ କିନ୍ତୁ ଉଚ୍ଚଭୂମି ସକଳ ଉତ୍ତରରୁ ଦକ୍ଷିଣ ଦିଗକୁ ଯାଇଅଛି । ଉଭୟ ଆମେରିକାର ପଶ୍ଚିମ ବା ପ୍ରଶାନ୍ତ ମହାସାଗରୋପକୂଳରେ ବଡ ବଡ ପର୍ବତଶ୍ରେଣୀ ଦେଖାଯାଏ—ଉ: ଆମେରିକାରେ ରକି (Rocky) ପର୍ବତଶ୍ରେଣୀ ଏବଂ ଦ: ଆମେରିକାରେ ଆଣ୍ଡିଜ (Andes) ପର୍ବତଶ୍ରେଣୀ । ଉଭୟ ମହାଦେଶର ପୂର୍ବୋପକୂଳରେ ଛୋଟ ଛୋଟ ପର୍ବତ ଦେଖାଯାଏ— ଆଲିଘାନି ଓ ବ୍ରେଜିଲିଅନ୍ ପର୍ବତ-ଶ୍ରେଣୀ । ଦୁଇ ଆମେରିକାର କେନ୍ଦ୍ର ବା ମଧ୍ୟ ଭାଗରେ ପ୍ରକାଣ୍ଡ ସମତଳ ପ୍ରଦେଶ । ଉତ୍ତର ଆମେରିକାର ସମତଳ ପ୍ରଦେଶ ଉତ୍ତର ମହାସାଗର ଠାରୁ ମେକ୍ସିକୋ ଉପସାଗର (Gulf of Mexico) ପର୍ଯ୍ୟନ୍ତ ବିସ୍ତୃତ ଏବଂ ଦକ୍ଷିଣ ଆମେରିକାର ସମତଳଟି କାରିବିଅନ୍ ସାଗର (Cari bbean sea) ଠାରୁ La Plata ଯାଏଁ ବିସ୍ତୃତ । ଆମେରିକାର ଅତିପ୍ରଧାନ ନଦୀ ସକଳ ଆଟ୍‌ଲାଣ୍ଟିକ୍ ମହାସାଗରରେ ଯାଇ ମିଳିତ ହୁଏ । ଉଭୟ ଆମେରିକାର ନଦୀସବୁ ପଶ୍ଚିମ ଦିଗରୁ ପୂର୍ବକୁ ଏବଂ ଉତ୍ତରରୁ ଦକ୍ଷିଣକୁ ବହିଯାଏ—ସେଣ୍ଟ ଲରେନ୍ସ (St Lawrence) ଓ ଆମେଜାନ୍ (Amazon) ପଶ୍ଚିମରୁ ପୂର୍ବକୁ ବହିଯାଏ ଏବଂ ମିସିସିପି ଓ ଲା ପ୍ଲାଟା ଉତ୍ତରରୁ ଦକ୍ଷିଣ ଦିଗରେ ପ୍ରବାହିତ ହୁଏ । ଉଚ୍ଚଭୂମିସବୁ ଆଟ୍‌ଲାଣ୍ଟିକ୍ ମହାସାଗରକୁ ଲାଗି ରହିଅଛି । ଏ ସମସ୍ତ ଉଚ୍ଚଭୂମି ପଶ୍ଚିମ

ଭାଗର ଉଚ୍ଚଭୂମି ସବୁ ସେତେ ବଡ ବା ଅଖଣ୍ଡ ନୁହେ । ଏସବୁ ମାଳଭୂମି ଟିକ୍ ଦାକ୍ଷିଣାତ୍ୟ ଭଳି—ଏ ମାଳଭୂମି ମଧ୍ୟରେ ଅନେକ ନଦୀ-ଗଠିତ ନିମ୍ନଭୂମି (valley) ଦେଖ ଯାଏ । ଉଭୟ ଆମେରିକାରେ, ପଶ୍ଚିମଭାଗର ପାର୍ବତ୍ୟ ଉଚ୍ଚଭୂମି ଏବଂ ପୂର୍ବଭାଗର ନିମ୍ନତର ମାଳଭୂମି ମଧ୍ୟରେ ଅତି ବିଶାଳ, ଅତିଫଳବନ୍ତ ସମତଳପ୍ରଦେଶ ବିସ୍ତୃତ । ଏ ସମସ୍ତ ସମତଳ ଦୀର୍ଘ ନଦୀମାନଙ୍କ ଦ୍ୱାରା ଗଠିତ, ପ୍ଲାବିତ । ଦୁଇ ଆମେରିକାର ଉତ୍ତର ଭାଗରେ ଦ୍ୱୀପମାଳା ଦେଖାଯାଏ ।

ଉ: ଆମେରିକା ଓ ଦ: ଆମେରିକା ମଧ୍ୟରେ ପ୍ରଭେଦ:—

୧ ଉ: ଆମେରିକାର ପୂର୍ବୋପକୂଳ ଅସମାନ, ବଙ୍କାଟଙ୍କା । ଅନେକ ସମୁଦ୍ରାଂଶ ମହାଦେଶ ମଧ୍ୟରେ ପ୍ରବେଶ କରିଅଛି । ଏଠାରେ ଅନେକ ଉପଦ୍ୱୀପ ଅଛି । ଦ: ଆମେରିକାର ପୂର୍ବୋପକୂଳଟି ସମାନ, ଅଖଣ୍ଡ ।

୨ ଉ: ଆମେରିକାରେ ଅନେକ ହ୍ରଦ ଅଛି; କିନ୍ତୁ ଦ: ଆମେରିକାରେ ଅତ୍ୟଳ୍ପ ହ୍ରଦ ଦେଖାଯାଏ ।

୩ ଉ: ଆମେରିକା ଉତ୍ତର ସମଶୀତୋଷ୍ଣ ମଣ୍ଡଳରେ ଅବସ୍ଥିତ; ସୁତରାଂ ଏହାର ଜଳବାୟୁ ଶୀତଳ । ଦ: ଆମେରିକା ଗ୍ରୀଷ୍ମକଟିବନ୍ଧରେ ଥିବାରୁ ଏହା ଗରମ ।

୪ ଉ: ଆମେରିକାର ଦ୍ୱୀପସକଳ ସୁମେରୁ ମଣ୍ଡଳରେ ଅଛି; ଏଣୁ ଏ ସବୁ ଅନୁର୍ବର ମରୁଭୂମି । ଏ ସମସ୍ତ ଦ୍ୱୀପରେ ଘାସ, ଶିଆଳ ଛଡ଼ା ଅନ୍ୟ କିଛି ବୃକ୍ଷଲତା ଜନ୍ମେ ନାହିଁ, ମନୁଷ୍ୟ ଆଦୌ ବାସ କରେ ନାହିଁ । କିନ୍ତୁ ଦ: ଆମେରିକାର ଦ୍ୱୀପପୁଞ୍ଜ, ପାଶ୍ଚାତ୍ୟ-ଭାରତ (West Indies) ଗ୍ରୀଷ୍ମମଣ୍ଡଳରେ ଥିବାରୁ ଖୁବ୍ ଫଳବନ୍ତ-ସମତଳପୂର୍ଣ୍ଣ—ଏ ସମସ୍ତ ଦ୍ୱୀପ ପ୍ରକାଣ୍ଡ ତୃଣ-ସମତଳ ଓ ଗ୍ରୀଷ୍ମ-ମଣ୍ଡଳୀୟ ଜଙ୍ଗଲରେ ଆଚ୍ଛାଦିତ ।

ଆମେରିକା ପ୍ରଧାନତଃ ତିନି ଭାଗରେ ବିଭକ୍ତ କରାଯାଇ ପାରେ,—ପଶ୍ଚିମ ଉଚ୍ଚଭୂମି; ପୂର୍ବ ଉଚ୍ଚଭୂମି; କେନ୍ଦ୍ରିକ ନିମ୍ନଭୂମି ବା ସମତଳ । ଏ ସମସ୍ତ ବିଷୟ ପରବର୍ତ୍ତୀ ଦୁଇ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

ପ୍ରଶ୍ନ: —

ଉ: ଆମେରିକା ସହିତ ଦ: ଆମେରିକାର ସାଦୃଶ୍ୟ ବୁଝାଇଦିଅ । ଉଭୟ ଆମେରିକାର ଗଠନ ଓ ଆକୃତିରେ କି ପ୍ରଭେଦ ଦେଖାଯାଏ ?

---

## ୨ (କ) ଉତ୍ତର ଆମେରିକାର ପର୍ବତଶ୍ରେଣୀ ଓ ମାଳଭୂମି

୧ ଉତ୍ତର ଆମେରିକାର ପଶ୍ଚିମ-ଉଚ୍ଚଭୂମିଟି (Western High lands)ମହାଦେଶତମାମ ବିସ୍ତୃତ—ହେଣ୍ଟୁଆନ୍‌ଟେପେକ୍ ଯୋଜକ ଠାରୁ ବେରିଂସାଗର ପର୍ଯ୍ୟନ୍ତ ବ୍ୟାପ୍ତ । ମଧ୍ୟଭାଗରେ ଏ ଉଚ୍ଚଭୂମିଟି ଖୁବ୍ ଓସାର ଏବଂ ଉତ୍ତର ଓ ଦକ୍ଷିଣ ଭାଗରେ ସଂକୀର୍ଣ୍ଣ, ଖୁବ୍ ଉଚ୍ଚ । ଏହା ପଶ୍ଚିମୋପକୂଳକୁ ଠିକ୍ ଲାଗିରହିଅଛି । ଏ ଉଚ୍ଚଭୂମି ଓ ପ୍ରଶାନ୍ତ ମହାସାଗର ମଧ୍ୟରେ ଗୋଟିଏ ସଂକୀର୍ଣ୍ଣ ନିମ୍ନ ପ୍ରଦେଶ ଦେଖାଯାଏ । ରକିପର୍ବତ ହେଉଛି ଏହି ପଶ୍ଚିମ-ଉଚ୍ଚଭୂମିର ଉଚ୍ଚତମ ଅଂଶ । ଏ ପର୍ବତଶ୍ରେଣୀଟି ଉତ୍ତର ମହାସାଗର ଠାରୁ ମେକ୍‌ସିକୋ ପର୍ଯ୍ୟନ୍ତ ୩୦୦୦ମାଇଲ ପ୍ରସାରିତ । ଏହା ପ୍ରାୟ ଏକ ମାଇଲ ଉଚ୍ଚ । ଶୀତଦିନେ Rockyର ଶୃଙ୍ଗ ସବୁ ବରଫାବୃତ ରହେ । ଏହାର ଶୃଙ୍ଗଗୁଡ଼ିକ ମଧ୍ୟରେ Mount Columbia (୧୪୧୯୫ ଫୁଟ) ଓ Fremont's Peak (୧୩୭୦୦ ଫୁଟ) ବିଶେଷ ଉଲ୍ଲେଖଯୋଗ୍ୟ ।

ରକିର ପଶ୍ଚିମ ଭାଗରେ ଅନ୍ୟାନ୍ୟ ପର୍ବତମାଳା ଦେଖାଯାଏ —ଏହାକୁ 'ପଶ୍ଚିମୋପକୂଳ ପର୍ବତମାଳା' (The West Coast Range) ବୋଲାଯାଏ । ଏ ପର୍ବତମାଳାର ଉତ୍ତର ଭାଗକୁ Cascade ଏବଂ ଦକ୍ଷିଣଭାଗକୁ Sierra Nevada ବା ତୁଷାରଗିରିମାଳା (Snow Mountains) କହନ୍ତି । ପଶ୍ଚିମୋପକୂଳ ପର୍ବତମାଳାର ସୁଦୂର ଉତ୍ତରାଂଶରେ ଅଲାସ୍କାପର୍ବତ (The Alaska Range) । Mount Mackinley ହେଉଛି ଅଲାସ୍କାପର୍ବତର ଉଚ୍ଚତମ ଶୃଙ୍ଗ—୨୦,୩୦୦ ଫୁଟ ଉଚ୍ଚ । କ୍ୟାସ୍‌କେଡ୍‌ ପର୍ବତଶ୍ରେଣୀର ପ୍ରଧାନ ଗିରିଶୃଙ୍ଗ,—ଇଲିଅସ୍ (Mount Elias)—୧୮୦୬୦ ଫୁଟ ଉଚ୍ଚ ଏବଂ ଲୋଗାନ୍ (Mt. Logan)—୧୯୫୪୦ ଫୁଟ ଉଚ୍ଚ ।

ଏହି ପଶ୍ଚିମୋପକୂଳ ପର୍ବତମାଳା ଓ ରକିଗିରିଶ୍ରେଣୀ ମଧ୍ୟରେ ଅତି ବିସ୍ତୃତ ଉଚ୍ଚ ମାଳଭୂମି (plateaux) ଦେଖାଯାଏ । ରକି ଓ କ୍ୟାସ୍‌କେଡ୍‌ ମଧ୍ୟରେ The Salt Lake plateau. ଏ ମାଳଭୂମିରେ ବର୍ଷା ପ୍ରାୟ ହୁଏ ନାହିଁ କହିଲେ ଚଳେ । ପଶ୍ଚିମ ଉଚ୍ଚଭୂମିର ସୁଦୂର ଦକ୍ଷିଣରେ ମେକ୍‌ସିକୋମାଳଭୂମି । ଏହାର ଉଭୟ ପାର୍ଶ୍ୱରେ ପଶ୍ଚିମ ଓ ପୂର୍ବ Sierra Madre ପର୍ବତମାଳା—ଭାରତର ଦାକ୍ଷିଣାତ୍ୟ ଯେପରି ପଶ୍ଚିମ ଓ ପୂର୍ବଘାଟ ଦ୍ୱାରା ବେଷ୍ଟିତ । ସିଏରା ମାଦ୍ରେ ଓ ମଧ୍ୟ-ଆମେରିକାର ପର୍ବତ ସବୁ ପାନାମା ଯୋଜକ ପର୍ଯ୍ୟନ୍ତ ବିସ୍ତାରିତ । ମେକ୍‌ସିକୋ ମାଳଭୂମିର ପ୍ରାନ୍ତରେ ଓରିଜାବା (୧୯୩୧୪ ଫୁଟ) ଓ ପପକାଟେପେଟଲ (୧୮୦୦୦ ଫୁଟ) ନାମକ ଦୁଇଟି ଉଚ୍ଚ ଆଗ୍ନେୟଗିରି ଦେଖାଯାଏ । ସମଗ୍ର ପଶ୍ଚିମ-ଉଚ୍ଚଭୂମିର ସ୍ଥାନେ ସ୍ଥାନେ କ୍ରିୟାଶୀଳ (active) ଓ ଗତାସୁ ବା ମୃତ (extinct) ଆଗ୍ନେୟଗିରି ବିକ୍ଷିପ୍ତ ହୋଇ ରହିଅଛି । ଏଣୁ ଏହି ଉଚ୍ଚଭୂମିର ଅନେକ ସ୍ଥାନରେ ଭୂମିକମ୍ପ ହୋଇଥାଏ ।

ଉପରୋକ୍ତ ସମସ୍ତ ପର୍ବତଶ୍ରେଣୀକୁ "The Cordilleran System" କହାଯାଏ । ଉତ୍ତର ଆମେରିକାର ପଶ୍ଚିମ ଭାଗରେ ଆଉ ଗୋଟିଏ ମାଳଭୂମି ଅଛି—ତାହାର ନାମ The Colorado plateau.

୨ ପୂର୍ବ-ଉଚ୍ଚଭୂମି (The eastern highlands):—

ଏହି ଉଚ୍ଚଭୂମି ନ୍ୟୁଫାଉଣ୍ଡଲାଣ୍ଡ ଠାରୁ ଦକ୍ଷିଣ-ପଶ୍ଚିମ ଦିଗରେ ପ୍ରାୟ ମେକ୍‌ସିକୋ ଉପସାଗର ପର୍ଯ୍ୟନ୍ତ ପ୍ରସାରିତ । ଏହି ଉଚ୍ଚଭୂମିରେହିଁ Appalachian ପର୍ବତମାଳା ଅବସ୍ଥିତ । ଏହାର ଦକ୍ଷିଣ ଭାଗଟି ଉତ୍ତର ଭାଗ ଅପେକ୍ଷା ଉଚ୍ଚତର । ଉ: ଆମେରିକାର ପୂର୍ବ-ଉଚ୍ଚଭୂମି ପଶ୍ଚିମ-ଉଚ୍ଚଭୂମି ଅପେକ୍ଷା ସଙ୍କୀର୍ଣ୍ଣତର ନିମ୍ନତର । ସେଇଣ୍ଟ ଲରେନ୍ସନଦୀ-ମୁହାଣ ଦ୍ୱାରା ପୂର୍ବ-ଉଚ୍ଚଭୂମିଟି ଦୁଇ ଖଣ୍ଡରେ ବିଭକ୍ତ ହୋଇଅଛି । ଏ ନଦୀର ଦକ୍ଷିଣ ଭାଗରେ, ଉଚ୍ଚଭୂମିଟି ଉପକୂଳର ସମାନ୍ତର ହୋଇ ଯାଇଅଛି—ଏଇ ଭାଗଟିହିଁ "ଆପଲେଚିଅନ୍ ଉଚ୍ଚଭୂମି"।Appalachian ଉଚ୍ଚଭୂମିର ପ୍ରଧାନ ପର୍ବତଶ୍ରେଣୀ ଆଲିଘାନି (Alleghany)। ଆଲିଘାନି ପର୍ବତ ପୂର୍ବୋପକୂଳରେ ଅଛି । ଏହା ଉଚ୍ଚ କମ୍ବା ପଶ୍ଚିମ-ଉଚ୍ଚଭୂମି ଠାରୁ ଖୁବ୍ ଛୋଟ । ଏ ପର୍ବତରେ ଅନେକ କୋଇଲା ଓ ଲୁହା ଖଣି ଦେଖାଯାଏ । ଏହି ଉଚ୍ଚଭୂମି ଓ ଆଟ୍‌ଲାଣ୍ଟିକ୍ ମଧ୍ୟରେ ଗୋଟିଏ ବିସ୍ତୀର୍ଣ୍ଣ ଉପକୂଳ-ପ୍ରଦେଶ ଅବସ୍ଥିତ । ଇଂଲେଣ୍ଡ ଓ ୟୁରୋପର ପର୍ଯ୍ୟଟକମାନେ ପ୍ରଥମରେ ଆସି ଏଇ ଉପକୂଳରେହିଁ ଉପନିବେଶ ସ୍ଥାପନ କରିଥିଲେ । ପୂର୍ବ-ଉଚ୍ଚଭୂମି ପ୍ରତିବନ୍ଧକ ଯୋଗେ ଏହି ୟୁରୋପୀୟ ଔପନିବେଶିକମାନେ ଅନେକ ଦିନ ଯାଏଁ ମହାଦେଶର ପଶ୍ଚିମ ବା ମଧ୍ୟଭାଗରେ ପ୍ରବେଶ କରି ପାରି ନଥିଲେ । କାନାଡ଼ାର ପୂର୍ବଭାଗଟି ମଧ୍ୟ ଗୋଟିଏ ଉଚ୍ଚଭୂମି ।

ପ୍ରଶ୍ନ:—'କର୍‌ଡ଼ିଲେରେନ୍ ଗିରିଶ୍ରେଣୀ' ବୋଇଲେ କଣ ବୁଝୁଛ ?

ପଶ୍ଚିମ-ଉଚ୍ଚଭୂମିରେ ବାରମ୍ବାର ଭୂମିକମ୍ପ ହୁଏ କାହିଁକି ?

ପଶ୍ଚିମ ଓ ପୂର୍ବ ଉଚ୍ଚଭୂମି ମଧ୍ୟରେ କି ପ୍ରଭେଦ ଦେଖାଯାଏ ?

## ୨ (ଖ) ଦକ୍ଷିଣ ଆମେରିକାର ଉଚ୍ଚଭୂମି

ଉ: ଆମେରିକା ଭଳି ଦ: ଆମେରିକା ମଧ୍ୟ ତିନି ଶ୍ରେଣୀରେ ବିଭକ୍ତ, ପଶ୍ଚିମ-ଉଚ୍ଚଭୂମି; ପୂର୍ବ-ଉଚ୍ଚଭୂମି ଓ କେନ୍ଦ୍ରୀୟ ସମତଳ ।

୧ ପଶ୍ଚିମ-ଉଚ୍ଚଭୂମି:—

ଦକ୍ଷିଣ ଆମେରିକାର ପଶ୍ଚିମୋପକୂଳ-ତମାମ ପୃଥିବୀର ଦୀର୍ଘତମ, ଅବିଚ୍ଛିନ୍ନ ଆଣ୍ଡିଜ୍ ପର୍ବତଶ୍ରେଣୀ ବିସ୍ତୃତ—ପାନାମାଉପସାଗର ଠାରୁ Cape Horn ପର୍ଯ୍ୟନ୍ତ । ଏହା ହିମାଳୟର ପ୍ରାୟ ତିନି ଗୁଣ ଅର୍ଥାତ୍ ୫୦୦୦ ମାଇଲ ଦୀର୍ଘ । ତେବେ ହିମାଳୟ ପରି ସେତେ ଉଚ୍ଚ ନୁହେଁ । ଅନେକ ସ୍ଥାନରେ ଆଣ୍ଡିଜ୍ ପ୍ରାୟ ତିନି ମାଇଲ ଉଚ୍ଚ । ହିମାଳୟର ଉଚ୍ଚତମ ଶୃଙ୍ଗ ଛଡ଼ା ଅନ୍ୟାନ୍ୟ ସମସ୍ତ ଶୃଙ୍ଗ ଭଳି, ଏହାର ଗିରିଶୃଙ୍ଗ-ସବୁ ଉଚ୍ଚ । ମାତ୍ର Andesର ଶୃଙ୍ଗ ସବୁ ଆଗ୍ନେୟଗିରିମୟ । ଆଣ୍ଡିଜ୍ ପାର ହେବା ଅତି କଠିନ । ବିଷୁବରେଖା ପାଖରେ ମଧ୍ୟ, ଏହାର ଉଚ୍ଚଶୃଙ୍ଗସକଳ ବରଫାଚ୍ଛନ୍ନ ରହେ । ଠିକ ପରି, ଏଠାର ପର୍ବତଶ୍ରେଣୀ ମଧ୍ୟରେ ବି ଉଚ୍ଚ, ବିସ୍ତୀର୍ଣ୍ଣ ମାଳଭୂମି ଦେଖାଯାଏ । ପ୍ରାୟ ଦକ୍ଷିଣଅକ୍ଷାଂଶ ୨୦ ଡିଗ୍ରି ନିକଟରେ ଆଣ୍ଡିଜ୍‌ପର୍ବତ ବାଙ୍କି ବୁଲିଛି—ଏ ଭାଗର ବିସ୍ତାର (breadth) ପ୍ରାୟ ୪୦୦ ମାଇଲ । ଏହି ବାଙ୍କ (bend)ର ଦକ୍ଷିଣ ଭାଗରେ ପର୍ବତମାଳା ଏକତ୍ରିତ ହୋଇଅଛି । ଶେଷରେ ପର୍ବତଟି ଗୋଟିଏ ଅବିଚ୍ଛିନ୍ନ [Continuous) ଶ୍ରେଣୀରେ ମହାଦେଶର ଦକ୍ଷିଣ-ପ୍ରାନ୍ତକୁ ଗ୍ଲିଅଛି ।

ଆଣ୍ଡିଜ୍‌ଗିରି ସେଠରେ ତିନିଗୋଟି ପ୍ରଧାନ ଶ୍ରେଣୀରେ ବିଭକ୍ତ—(କ) ଉତ୍ତର ବା ବିଷୁବରେଖାମଣ୍ଡଳୀୟ ଆଣ୍ଡିଜ୍ (The Northern

or Equitorial Andes) (ଖ) ମଧ୍ୟ-ଆଣ୍ଡିଜ୍ (The Central Andes) (ଗ) ଦକ୍ଷିଣଆଣ୍ଡିଜ୍ (The Southern Andes)

(କ) ଉତ୍ତର-ଆଣ୍ଡିଜ୍:--- ଏହା ଉତ୍ତର ୧୦ଡିଗ୍ରି ଓ ଦକ୍ଷିଣ ୧୫ଡିଗ୍ରି ମଧ୍ୟରେ ବିସ୍ତାରିତ । ଏଠାରେ ଅନେକ ଅତ୍ୟୁଚ୍ଚ ଗିରିଶୃଙ୍ଗ ଦେଖାଯାଏ—ପ୍ରାୟ ସମସ୍ତ ଶୃଙ୍ଗ ଆଗ୍ନେୟଗିରିପୂର୍ଣ୍ଣ । ଏଠାର ପ୍ରଧାନ ଆଗ୍ନେୟଗିରି ହେଉଛି— Cotopaxi (୧୯୬୦୦ ଫୁଟ) ଓ Chimborazo (୨୦, ୫୦୦ ଫୁଟ) । କୋଟୋପାକ୍ସି ବର୍ତ୍ତମାନ ସୁଦ୍ଧା କ୍ରିୟାଶୀଳ (active) । ଚିମ୍ବୋରାଜୋ ଆଗ୍ନେୟଗିରିର ଗହ୍ୱର ବା ବିଗତପ୍ରାଣ— ଏହାର ମୁଖବିବରଟି (crater) ତୁଷାରକ୍ଷେତ୍ରାଚ୍ଛାଦିତ ।

(ଖ) ମଧ୍ୟ-ଆଣ୍ଡିଜ୍ ସେଠାରେ ଦୁଇଟି ସମାନ୍ତର ଶ୍ରେଣୀରେ ବିଭକ୍ତ । ଏହା ବଲିଭିଆ (Bolivian) ମାଳଭୂମିକୁ ଘେରି ରହିଅଛି । ଏଠାର ଉଚ୍ଚତମ ଗିରିଶୃଙ୍ଗ Sorate (୨୧୪୯୦ ଫୁଟ) । ବଲିଭିଆମାଳଭୂମି ସାଗର ତଳରୁ ପ୍ରାୟ ବାର ହଜାର ଫୁଟ ଉଚ୍ଚ । ଏହା ମଧ୍ୟ-ଆଣ୍ଡିଜ୍ର ଅତି ବିସ୍ତୃତ ଅଂଶ ଅଧିକାର କରିଅଛି । ଏହା ଟିଟିକାକାହ୍ରଦକୁ (Lake Titicaca) ବେଷ୍ଟନ କରି ରହିଅଛି ।

(ଗ) ଦକ୍ଷିଣ-ଆଣ୍ଡିଜ:— ଏହି ଭାଗରେ ପର୍ବତଶ୍ରେଣୀଟି ପୁନର୍ବାର ସମ୍ମିଳିତ ହୋଇଅଛି । ଏଠାର ଗହ୍ୱର ଆଗ୍ନେୟଗିରି ଆକୋଙ୍କାଗୁଆ (Aconcagua)—ଉଚ୍ଚତା ୨୩ ହଜାର ଫୁଟ । ଏଠାରୁ ଆଣ୍ଡିଜ୍ ଅବିଚ୍ଛିନ୍ନ ଭାବରେ ଦକ୍ଷିଣପ୍ରାନ୍ତ ଯାଏଁ ଯାଇଅଛି । ଦକ୍ଷିଣ ଭାଗରେ, ଆଣ୍ଡିଜ୍‌ଗିରି ଢ଼ଣା ଅଧିକରେ Alps ପରି ଦିଶେ; କାରଣ ଏ ଭାଗଟି ବରଫକ୍ଷେତ୍ର ଓ ଉପତ୍ୟକାପୂର୍ଣ୍ଣ ।

ଆଣ୍ଡିଜ୍‌ପର୍ବତ ନିମ୍ନଲିଖିତ ବିଷୟ ନିମନ୍ତେ ପ୍ରସିଦ୍ଧ:— ଦୈର୍ଘ୍ୟ; ଅବିଚ୍ଛିନ୍ନତା; ଉଚ୍ଚତା; ଭୂମିକମ୍ପ; ଉଚ୍ଚଗିରିଶୃଙ୍ଗ ଓ ଆଗ୍ନେୟଗିରି; ଉଚ୍ଚ, ଦୁର୍ଗମ ଗିରିସଙ୍କଟ ।

ଦକ୍ଷିଣ ଆମେରିକାର ଅନ୍ୟାନ୍ୟ ପର୍ବତଶ୍ରେଣୀ:— ଉତ୍ତର ଭାଗରେ Sierra Parime ଓ Sierra Acaray ଏବଂ ପୂର୍ବ ଭାଗରେ ବ୍ରେଜିଲ୍ ପର୍ବତଶ୍ରେଣୀ—ଯାହା ଦ୍ଵାରା ବ୍ରେଜିଲ୍‌ମାଳଭୂମି ପରିବେଷ୍ଟିତ ।

୬ ପୂର୍ବ-ଉଚ୍ଚଭୂମି:—

ଏହା ସ୍ଵଚ୍ଛସ୍ତୀର୍ଣ୍ଣ ଆମେଜାନ୍-ନିମ୍ନଭୂମି ଯୋଗେ ଦୁଇ ଭାଗରେ ବିଭକ୍ତ । ଉତ୍ତର-ପୂର୍ବ ଦିଗରେ ଗିଆନା (Guiana) ଉଚ୍ଚଭୂମି । ବ୍ରେଜିଲ୍‌ଉଚ୍ଚଭୂମିଟି La Plata ମୁହାଣ ପର୍ଯ୍ୟନ୍ତ ପ୍ରସାରିତ । ଆମେଜାନ୍-ମୁହାଣରୁ ଲା ପ୍ଲାଟା ମୁହାଣ ଯାଏଁ ଯଦି ଗୋଟିଏ ରେଖା ଟଣା ଯାଏ, ତାହାହେଲେ ଏହି ରେଖାର ପୂର୍ବ ଭାଗରେ Brazil plateau ଥିବାର ଦେଖାଯାଇ ପାରିବ । ଆମେଜାନ୍‌ମୁହାଣ ଠାରୁ ପାନାମା ସଂଯୋଜକ ପର୍ଯ୍ୟନ୍ତ ଅନ୍ୟ ଏକ ରେଖା ଟାଣି ଦେଖି ପାରିବ ଯେ, ଏ ରେଖାର ଉତ୍ତର ଭାଗରେ ଗିଆନା ଉଚ୍ଚଭୂମି ଅବସ୍ଥିତ । ଗିଆନା ମାଳଭୂମିକି ଆମେଜାନ୍‌ଠାରୁ ଅରିନୋକୋ (Orinoco) ନଦୀକି ପୃଥକ୍ କରୁଅଛି । ବ୍ରେଜିଲ୍ ମାଳଭୂମିର ଉତ୍ତର ସୀମା ଆମେଜାନ୍, ଦକ୍ଷିଣ ସୀମା ଲା ପ୍ଲାଟା ।

ପ୍ରଶ୍ନ:— ହିମାଳୟ ସଙ୍ଗେ ଆଣ୍ଡିଜ୍‌ର ତୁଳନା କର ।

ଆଣ୍ଡିଜ୍ କେଉଁ କେଉଁ ବିଷୟରେ ପ୍ରସିଦ୍ଧ ?

ଗିଆନା ଓ ବ୍ରେଜିଲ୍ ମାଳଭୂମିର ସୀମା ନିର୍ଦ୍ଦେଶ କର ।

## ୬ (ଗ) ଆମେରିକାର କେନ୍ଦ୍ରିକ ସମତଳ

ଉତ୍ତର ଆମେରିକାର ଏହି କେନ୍ଦ୍ରିକ ସମତଳ ବା ନିମ୍ନଭୂମି ପଶ୍ଚିମ ଓ ପୂର୍ବ ଉଚ୍ଚଭୂମି ମଧ୍ୟରେ ଅବସ୍ଥିତ । ଉତ୍ତର ଦିଗରେ ସମତଳଟି ହଡ୍‌ସନ୍ ଉପସାଗର ଓ ଉତ୍ତର ମହାସାଗର ଆଡ଼କୁ କ୍ରମଶଃ ଗଡ଼ାଣିଆ ହୋଇ

ଯାଇଅଛି—ଏଠାରେ ତାହା ଅନେକ ନିମ୍ନଭୂମି ଦ୍ୱୀପରେ ବିଭକ୍ତ ହୋଇଅଛି । ଦକ୍ଷିଣ ଭାଗରେ ଏ ସମତଳ ପ୍ରଦେଶ ମେକ୍ସିକୋ ଉପସାଗରକୁ ବେଷ୍ଟିତ କରିଅଛି । ଏ ସମତଳକୁ 'Great Plains' ବି କହନ୍ତି । ରକି-ଆଲଘେନି-ମଧ୍ୟବର୍ତ୍ତୀ ବିସ୍ତୀର୍ଣ୍ଣ ନିମ୍ନଭୂମି ମଧ୍ୟରେ ମିସିସିପି ଓ ତାହାର ଉପନଦୀ ସକଳ ପ୍ରବାହିତ । ସମତଳଟି ପଶ୍ଚିମ ଦିଗକୁ କ୍ରମେ ଉଚ୍ଚ ହୋଇ ଯାଇଅଛି—ରକିପର୍ବତର ପାଦଦେଶରେ ନ ପହଞ୍ଚୁ ଏହା ୬୦୦ ଫୁଟ ଉପରକୁ ଉଠିଅଛି ।

କେନ୍ଦ୍ରିକସମତଳର ଉତ୍ତର ଭାଗରେ କାନାଡ଼ାରାଜ୍ୟ ବା ବ୍ରିଟିଷ୍ ଆମେରିକା ଏବଂ ଦକ୍ଷିଣଦିଗରେ ଯୁକ୍ତରାଜ୍ୟ । ଏହାର ଉତ୍ତରାଂଶରେ ହଜାର ହଜାର ହ୍ରଦ ଦେଖାଯାଏ ।

ଦକ୍ଷିଣ ଆମେରିକାର ଉଚ୍ଚଭୂମି ସମ୍ବନ୍ଧରେ ପଢ଼ିସାରିଛ । ଏ ମହାଦେଶର ଅବଶିଷ୍ଟ ଭାଗ ଏକ ପ୍ରକାଣ୍ଡ ସମତଳ—ତିନିଗୋଟି ବଡ଼ ନଦୀ ଓ ସେମାନଙ୍କ ପୋଷକ ନଦୀ ଦ୍ୱାରା ପ୍ଲାବିତ । ଏ ତିନି ନଦୀ ହେଉଛି, ଅରିନୋକ, ଆମେଜାନ୍ ଓ ପାର୍ଣ୍ଣା । କେନ୍ଦ୍ରିକ ସମତଳଟି ଖୁବ୍ ନିମ୍ନ । ଅରିନୋକ ନଦୀ ଗିଆନାଉଚ୍ଚଭୂମିର ଉତ୍ତର ଓ ପଶ୍ଚିମ ଗଡ଼ାଣିଆ ପ୍ରଦେଶ ପ୍ଲାବିତ କରେ । ଏହାର ଦୀର୍ଘ ପୋଷକ ନଦୀସବୁ ଆଣ୍ଡିଜ୍‌ରୁ ବହି ଆସେ । ଅରିନୋକର ମୁହାଣ ଅତି ବଡ଼ । ଆମେଜାନ୍‌ର ମୁହାଣ ଅନେକ ଦ୍ୱୀପ, ପରିବର୍ତ୍ତନଶୀଳ କର୍ଦ୍ଦମ-ବନ୍ଧ (mud-banks) ଦ୍ୱାରା ରୁଦ୍ଧ । ଆଣ୍ଡିଜ୍‌ର ପାଦଦେଶ ଯାଏଁ ଆମେଜାନ୍ ନାବ୍ୟ ।

ପ୍ରଶ୍ନ:— ଆମେରିକାର କେନ୍ଦ୍ରିକସମତଳର ସୀମା ନିର୍ଦ୍ଦେଶ କର ।

ଦକ୍ଷିଣ ଆମେରିକାର ସମତଳଟି କେଉଁ କେଉଁ ନଦୀ ଦ୍ୱାରା ପ୍ଲାବିତ ?

## ୨ (ଘ) ଜଳନିକାଶ—ନଦୀ

ଉତ୍ତର ଆମେରିକା:—

ପ୍ରଶାନ୍ତମହାସାଗରକୁ ବହିଯିବା ନଦୀସବୁ ଆଟ୍‌ଲାଣ୍ଟିକ୍-ଗାମୀ ନଦୀମାନଙ୍କ ପରି ସେତେ ପ୍ରଧାନ ନୁହେ । ଏହାର କାରଣ ମାନଚିତ୍ରରୁ ଧରିଯାଏ । ପ୍ରଶାନ୍ତ-ଗାମୀ ନଦୀସବୁ ସରଳୋନ୍ନତ ପଶ୍ଚିମ-ଉଚ୍ଚଭୂମିରେ ଜାତ ହୋଇ ସଙ୍କୀର୍ଣ୍ଣ ଉପକୂଳପ୍ରଦେଶ ମଧ୍ୟରେ ବହିଯାଏ; ଏଣୁ ଏ ଗୁଡିକ ନାବ୍ୟ ନୁହେ । ୟୁକନ୍, ଫ୍ରେଜର, କଲମ୍ବିଆ, ସ୍ନେକ୍, କେଲୋରାଡୋ— ଏ ନଦୀ ସବୁ ପ୍ରଶାନ୍ତ ମହାସାଗରରେ ଯାଇ ପଡେ ।

ପୂର୍ବ-ଉଚ୍ଚଭୂମିରୁ ଆଟ୍‌ଲାଣ୍ଟିକ୍ ମହାସାଗରକୁ ବହିଯିବା ନଦୀସକଳ ଅତି ଦୀର୍ଘ ନୁହେ । ଅଥଚ ସେମାନଙ୍କ ମଧ୍ୟରୁ କେତୋଟି ଅତି ପ୍ରଧାନ । ଏହାର କାରଣ କଣ ? ଏ ସମସ୍ତ ପ୍ରଧାନ ନଦୀର ନିମ୍ନଭୂମି ମାର୍ଗରେ ପୂର୍ବ-ଉଚ୍ଚଭୂମି ପାର ହୋଇ ଫଳବତୀ କେନ୍ଦ୍ରୀୟ ସମତଳକୁ ଯାତାୟାତ କରିବା ବଡ ସୁବିଧାଜନକ । ଏଠାରେ ଅନେକ ସଡ଼କ ଓ ରେଲପଥ ତିଆରି ହୋଇଅଛି ।

ଉପରେ କେତୋଟି ଛୋଟ ନଦୀର କଥା କହାଗଲା । ଉତ୍ତର ଆମେରିକାର କେନ୍ଦ୍ରୀୟ ସମତଳ ପ୍ରଦେଶ କେତେ ଗୋଟି ଦୀର୍ଘ ନଦୀ ଦ୍ୱାରା ପ୍ଲାବିତ ହେଉଅଛି । ମାକେଞ୍ଜି ନଦୀ (The Mackenzie) ଗୋଟିଏ ହ୍ରଦରେ ଜାତ ହୋଇ ଉତ୍ତର ମହାସାଗରରେ ଯାଇ ମିଶେ । ନେଲସନ୍ ନଦୀ Winnipeg ହ୍ରଦକୁ ହଡ୍‌ସନ୍ ଉପସାଗର ସଙ୍ଗେ ମିଶାଇଅଛି । ସେଇଣ୍ଟ୍ ଲରେନ୍ସ ନଦୀ ଏରିହ୍ରଦରୁ (Lake Erie) ବାହାରି ଲରେନ୍ସ ଉପସାଗରରେ ଯାଇ ପ୍ରବେଶ କରେ । ସୁପିରିଅର୍, ମିଚିଗାନ୍, ହ୍ୟୁରନ୍, ଏରି, ଓଣ୍ଟେରିଓ—ଏ ପାଞ୍ଚୋଟି ହ୍ରଦ ଲରେନ୍ସକୁ ଜଳ ଯୋଗାଏ । ଏରି-ଓଣ୍ଟେରିଓମଧ୍ୟବର୍ତ୍ତୀ ଲରେନ୍ସକୁ 'Niagara' (The thunder of the waters) କହନ୍ତି । ଏ ସ୍ଥାନରେ ନଦୀଟି

ଅଭ୍ୟୁଗ୍ର ବେଗରେ ବହେ, ୧୬୦ ଫୁଟ ଉଚ୍ଚ ଏକ ପାହାଡ ଉପରୁ ପଡ଼େ। ଏହାହିଁ ସୁପ୍ରସିଦ୍ଧ 'ନାଇଗରା ପ୍ରପାତ' (Niagara Falls)। ଲରେନ୍ସ ତଟରେ କ୍ୱିବେକ୍, ମଣ୍ଟ୍ରିଅଲ୍ ଓ ଓଟ୍ଟାଉଆ ସହର ଦେଖାଯାଏ।

ସୁପିରିଅର ହ୍ରଦ ନିକଟସ୍ଥ ଏକ ଛୋଟ ହ୍ରଦରେ ମିସିସିପି (The Mississippi) ନଦୀର ଉତ୍ପତ୍ତି। ଏହା କେନ୍ଦ୍ରୀକ ସମତଳର ମଧ୍ୟ ଭାଗରେ ଦକ୍ଷିଣ ଦିଗରେ ବହି ମେକ୍‌ସିକୋ ଉପସାଗରରେ ଯାଇ ମିଳିତ ହୁଏ। ମିସିସିପିର ସୁବିସ୍ତୀର୍ଣ୍ଣ ଅବବାହିକା (basin) କେନ୍ଦ୍ରୀକ ସମତଳର ସମଗ୍ର ଦକ୍ଷିଣଭାଗକୁ ମାଡ଼ି ବସିଅଛି। ଏହା ଉତ୍ତର ଆମେରିକାର ବୃହତ୍ତମ ନଦୀ। ଏହାକୁ "ଯୁକ୍ତରାଜ୍ୟର ବୃହତ୍ତର ଐରାବତୀ" (The Greater Irrawaddy of the United States) କହନ୍ତି। ନଦୀର ଡାହାଣ ପାର୍ଶ୍ୱରେ ପଶ୍ଚିମ-ଉଚ୍ଚଭୂମି ଏବଂ ବାମ ଭାଗରେ ପୂର୍ବ-ଉଚ୍ଚଭୂମିକୁ ମ୍ଳାବିତ କରୁଅଛି। St Louis (ଲୁଇ) ସହର ନିକଟରେ ଅର୍ଥାତ୍ ନିଜ ଗତିର ଅର୍ଦ୍ଧ ପଥରେ, ମିସିସିପି ମିସୌରି (The Missouri) ନଦୀ ସଙ୍ଗେ ମିଶିଅଛି। ମିସୌରି ମିସିସିପି ଠାରୁ ବଡ଼—ପଶ୍ଚିମ ଉଚ୍ଚଭୂମିରୁ St Louis ପର୍ଯ୍ୟନ୍ତ ତିନି ହଜାର ମାଇଲ ଲମ୍ବା। ମିସିସିପିର ଡାହାଣ ପାର୍ଶ୍ୱର ଉପନଦୀ:—ମିସୌରି; ଆର୍କାନ୍‌ସାସ୍ ଓ ରକ୍ତ ନଦୀ (The Red River). ମିସୌରି ବୃହତ୍ତମ ଉପନଦୀ। ଅଳ୍ପରି ତଳକୁ, ଅର୍ଥାତ୍ ସେଇଣ୍ଟ୍ ଲୁଇ ସହରର ଦକ୍ଷିଣରେ, ମିସିସିପି ସଙ୍ଗେ ଓହିଓ (The Ohio) ନଦୀ ମିଳିତ ହୁଏ। ମିସିସିପିର ବାମଭାଗର ପ୍ରଧାନ ପୋଷକ ନଦୀ (Feeder) ହେଉଛି ଓହିଓ— ଏହା ଆଲିଘେନି ପର୍ବତଶ୍ରେଣୀର ଢାଲୁ ପ୍ରଦେଶ ପ୍ଲାବିତ କରେ।

ମିସୌରିସଂଯୁକ୍ତ ମିସିସିପି ପୃଥିବୀର ଦୀର୍ଘତମ ନଦୀ। ଯମୁନା, ଗଙ୍ଗା ଓ ଏ ଦିଓଟିର ପୋଷକନଦୀ ସକଳ ସହିତ ମିସୌରି, ମିସିସିପି ଓ ପୋଷକ-ନଦୀଗୁଡ଼ିକର ତୁଳନା କରାଯାଇପାରେ। ମୁହାଣ ଦିଗରୁ ୩୦୦ ମାଇଲ

ଦୂରରେ ମିସିସିପି, ଗଙ୍ଗା ନଦୀ ପରି, ଅନେକ ଶାଖାରେ ବିଭକ୍ତ ହୋଇ ଅଛି—ଏ ସମସ୍ତ ଶାଖାକୁ ନେଇ ତାହାର ମୁହାଣ ଗଠିତ । ଏହାର ତଟରେ ଶତାଧିକ ମାଇଲ ଯାଏଁ ବନ୍ଧ (bund) ତିଆରି ହୋଇଅଛି । ମୁହାଣରୁ ପ୍ରାୟ ଏକଶତ ମାଇଲ ଦୂରରେ New Orleans ସହର ଅବସ୍ଥିତ । ଏ ସହର ହେଉଛି ମିସିସିପି-ଜନ୍ମଭୂମିର ସାଗର-ଦ୍ୱାର । ମିସିସିପି-ତୀରବର୍ତ୍ତୀ ସହରଃ—St Paul, St Louis, New Orleans. ଏ ନଦୀର ବାର୍ଷିକ ବନ୍ୟାରେ କୂଳବର୍ତ୍ତୀ ପଲ୍ଲୀ ଓ ସହରର ବିଶେଷ କ୍ଷତି ହୁଏ ; ଏଣୁ ସମଗ୍ର ନଦୀର ଉଭୟ ତଟରେ ଗୋଟିଏ ଉଚ୍ଚ, ଶକ୍ତ ବନ୍ଧ ତିଆରି କରିବାର ପ୍ରସ୍ତାବ ହୋଇଅଛି । ଯୁକ୍ତରାଜ୍ୟ-ସରକାର ବର୍ତ୍ତମାନ ଏ କାମ ପାଇଁ ୯୦ କୋଟି ଟଙ୍କା ମଞ୍ଜୁର କରିଅଛି । ଏହା ହେବ ପୃଥିବୀର ବୃହତ୍ତମ ନଦୀ-ବନ୍ଧ ।

ଦକ୍ଷିଣଆମେରିକା:—

ଆମେଜାନ୍ ପୃଥିବୀର ବୃହତ୍ତମ ନଦୀ । ଏହା ପ୍ରଶାନ୍ତ ମହାସାଗର ନିକଟରେ ଆଣ୍ଡିଜ୍‌ପର୍ବତରୁ ବାହାରି ବ୍ରେଜିଲ୍ ମଧ୍ୟରେ ପୂର୍ବଦିଗରେ ୩୦୦୦ ମାଇଲ ବହି ଯାଇ ଆଟ୍‌ଲାଣ୍ଟିକ୍ ମହାସାଗରରେ ପଡ଼ିଅଛି । ଏହାର ମୁହାଣ ୩୦ ମାଇଲ ଓସାର । ଆମେଜାନ୍‌ର ୯ ଗୋଟି ପୋଷକନଦୀ ବା ଉପନଦୀ ଅଛି—ପ୍ରତ୍ୟେକ ଉପନଦୀ ଗଙ୍ଗାଠାରୁ ବି ଅଧିକ ଲମ୍ବା । ଏ ସମସ୍ତ ପୋଷକ ନଦୀରେ ଷ୍ଟିମର ଜାହାଜ ଯିବା ଆସିବା କରିଥାଏ । ଉତ୍ତର ଓ ଦକ୍ଷିଣଭାଗର ମାଳଭୂମିରୁ କେତୋଟି ବଡ଼ ନଦୀ ବହି ଆସି ଆମେଜାନ୍‌ରେ ମିଶୁଅଛି । ଏହା ବନଜଙ୍ଗଲ (Selvas) ମଧ୍ୟରେ ପ୍ରବାହିତ । ଏ ନଦୀ ଉପରେ ନୌକା ଯୋଗେ ବନ ମଧ୍ୟରେ ପ୍ରବେଶ କରିବାକୁ ହୁଏ—ଏହା ଛଡ଼ା ଜଙ୍ଗଲ ଭିତରକୁ ଯିବାର ଅନ୍ୟ ମାର୍ଗ ନାହିଁ । ଆମେଜାନ୍‌ରେ ଭାସି ଆସିବା କାଦୁଅ ସମୁଦ୍ରରେ ପ୍ରାୟ ଦୁଇଶତ ମାଇଲ ବିସ୍ତୃତ ହୋଇଥାଏ ।

Maranon ଓ Ucayali ନାମକ ଦୁଇଟି ନଦୀ ଆଣ୍ଡିଜ୍ ପର୍ବତରେ ଜନ୍ମି ଉତ୍ତରମୁଖ ହୋଇ ହିମଲୋହିତ ଉପତ୍ୟକାବାଟେ ଉତ୍ପୁଙ୍ଗର ବେଗରେ ବହିଯାଏ । ଦୁଇଟି ଯାକ ଜଳପ୍ରପାତପୂର୍ଣ୍ଣ । ଏ ଦୁଇ ନଦୀ ସମତଳ ପ୍ରଦେଶରେ ପରସ୍ପର ସହିତ ସଂଯୁକ୍ତ ହୋଇଅଛି । ଦୁଇଟିର ସମ୍ମିଳିତ ଜଳରେହିଁ ଖାସ୍ ଆମେଜାନ୍ ଗଠିତ । ମାରାନନ୍ ଓ ଉକୟାଲିର ସଙ୍ଗମସ୍ଥଳରୁ ମୁହାଣ ପର୍ଯ୍ୟନ୍ତ ଆମେଜାନ୍‌ରେ ବଡ଼ ବଡ଼ ଜାହାଜ ଯାତାୟାତ କରେ । ଆମେଜାନ୍‌ରେ ଏହି ପୋତ-ଗମ୍ୟ ଭାଗର ଦୈର୍ଘ୍ୟ ସମଗ୍ର ଭାରତବର୍ଷର ଦୈର୍ଘ୍ୟ ଅପେକ୍ଷା ଅଧିକ । ଏହାର ଉପନଦୀ Rio Negro ତଟରେ Manaos ନାମକ ନଦୀ-ବନ୍ଦର ଅବସ୍ଥିତ । ଏହି ବନ୍ଦର ପର୍ଯ୍ୟନ୍ତ ବଡ଼ ବଡ଼ ମହାସାଗର-ଷ୍ଟୀମେର୍ ମଧ୍ୟ ଆସିପାରେ । ଆମେଜାନ୍ ଯେ ଗୋଟିଏ ଅତି ପ୍ରକାଣ୍ଡ ନଦୀ, ଏହା ଏଥିରୁ ଭଲ କରି ବୁଝିପାରୁଥିବ । ମୁହାଣ ଠାରୁ ୨୫୦ ମାଇଲ ଯାଏଁ ଆମେଜାନ୍‌ର ଯେ କୌଣସି ଭାଗ ୫୦ ମାଇଲରୁ କମ୍ ଓସାର ନୁହେ । ବର୍ଷାଦିନେ ଏ ନଦୀର ବଢ଼ି ଦୁଇ ପାଖରେ ଶତାଧିକ ମାଇଲ ମାଡ଼ି ଯାଏ । ମୁହାଣରେ ନଦୀ-ଜଳ ଏପରି ପ୍ରବଳ ଭାବରେ ବଢ଼ି ଉଠେ ଯେ, ଆଟ୍‌ଲାଣ୍ଟିକ୍‌ର ଶତାଧିକ ମାଇଲ କାଦୁଅରେ ଢାଙ୍କି ହୋଇ ପଡ଼େ । ମୁହାଣଠାରୁ ସମୁଦ୍ର ଭିତରକୁ ୨୦୦ ମାଇଲ ବାଟ ଗଲେ ମଧ୍ୟ ସେଠାରେ ସୁସ୍ୱାଦ (ଅଲବଣାକ୍ତ) ଜଳ ମିଳିପାରେ ।

ଦକ୍ଷିଣ ଆମେରିକାର ଅନ୍ୟାନ୍ୟ ନଦୀ:— The Orinoco (Coiling snake); The Uruguay; The Sao Francisco; The Tocantins; The Magdalena, The Parna; The Paraguay. ପାର୍ଣା-ପାରାଗୁଏ-ଗଠିତ ମୁହାଣକୁ "La Plata" କୁହାଯାଏ ।

ପ୍ରଶ୍ନ:— ଉତ୍ତର ଅମେରିକାର ପ୍ରଶାନ୍ତମହାସାଗର-ଗାମୀ ନଦୀସବୁ ସେଥିରେ ପ୍ରଧାନ ନଦୀ କାହିଁକି ?
କେଉଁ ବିଷୟରେ ଗଙ୍ଗାନଦୀ ସଙ୍ଗେ ମିସିସିପିର ତୁଳନା କରାଯାଇପାରେ ?
ଆମେଜାନ୍ ନଦୀର ବିଶାଳତା ବର୍ଣ୍ଣନ କର ।

## ୩ ଜଳବାୟୁ ଓ ଉଦ୍ଭିଦ

ଉତ୍ତର ଅମେରିକା:—

ଉତ୍ତର ଅମେରିକା ସୁମେରୁ ନିକଟରୁ ବିଷୁବରେଖା ନିକଟକୁ ଗଲିଅଛି । ଏହାର କେତେକ ଅଂଶ ଉଚ୍ଚ କେତେକାଂଶ ନିମ୍ନ । ଏଣୁ ଏସିଆ ଭଳି, ଏ ମହାଦେଶର ବିଭିନ୍ନ ଭାଗରେ ବିଭିନ୍ନ ପ୍ରକାର ଜଳବାୟୁ ଅନୁଭୂତ ହୁଏ ବିଭିନ୍ନ ବୃକ୍ଷଲତା ଓ ଶସ୍ୟ ଜନ୍ମେ । ଉତ୍ତରାଞ୍ଚଳର ଅନେକ ଭାଗରେ ୩ ଠାରୁ ୬ ମାସ କାଳ ଶୀତ ଋତୁ ରହେ । ମହାଦେଶର ଉତ୍ତରାର୍ଦ୍ଧରେ ଜାନୁଏରୀ ମାସରେ ଜଳ ଘନୀଭୂତ ହୋଇ ଯାଏ । ଗ୍ରୀଷ୍ମ ଋତୁରେ, ସୁଦୂର ଉତ୍ତରାଞ୍ଚଳ ଓ ଉଚ୍ଚ ପର୍ବତଶ୍ରେଣୀ ବ୍ୟତୀତ, ମହାଦେଶତମାମ ଉଷ୍ଣ ରହେ । ଏହାର ଉତ୍ତର ଭାଗକୁ ପଶ୍ଚିମପବନ ପ୍ରଶାନ୍ତ ମହାସାଗରରୁ ବର୍ଷା ଧରି ଆସେ । ବର୍ଷର ଅଧିକ ସମୟ ଉ: ଲଘିମା ୩୮ ଡିଗ୍ରୀର ଉତ୍ତରସ୍ଥିତ ପ୍ରଶାନ୍ତ-ଉପକୂଳରେ ଉତ୍ତମ ବୃଷ୍ଟି ହୁଏ । ଏହି ବୃଷ୍ଟି-ମଣ୍ଡଳରେ ପର୍ବତ-ଢାଲୁରେ ବୃହତ୍ତମ ବୃକ୍ଷ ସକଳ ଜାତ ହୁଏ । କାଲିଫର୍ଣିଆଉପସାଗର ନିକଟସ୍ଥ କୋଲୋରାଡ଼ୋ ମରୁଭୂମିରେ ଅତ୍ୟଳ୍ପ ବର୍ଷା ହୁଏ; କାରଣ, ଉତ୍ତର-ପୂର୍ବ ବାଣିଜ୍ୟବାୟୁ ଭୂମିଅଡ଼ୁ ଏଠାକୁ ବହି ଆସେ । ଉ: ୩୫ ଡିଗ୍ରୀ ଓ ଉ: ୩୮ ଡିଗ୍ରୀ ମଧ୍ୟବର୍ତ୍ତୀ ଅଞ୍ଚଳଟି ଖରାଦିନେ ଗରମ, ଶୁଷ୍କ ରହେ ଏବଂ ଶୀତ ଦିନେ

ଏଠାରେ ବର୍ଷା ହୁଏ । ଏ ଭାଗରେ ଖର୍ଜୁରାଦିନେ ନାନା ରକମ ଫଳ ମିଳେ । କାଲିଫର୍ଣିଆର ଶ୍ରେଷ୍ଠ ଫଳ ଅମେରିକାର ଅନ୍ୟାନ୍ୟ ଅଞ୍ଚଳକୁ ଓ ୟୁରୋପକୁ ପଠାଯାଏ—ଆମ ଦେଶକୁ ବି ଆସିଥାଏ ।

ମେକ୍ସିକୋ ଉପସାଗରରୁ ମହାଦେଶ ଉତ୍ତରକୁ ବହୁଥିବା ଉଷ୍ଣ ବାୟୁରେ ବର୍ଷା ହୁଏ ଏବଂ ସୁଦୂର ଉତ୍ତରାଞ୍ଚଳଙ୍କ ମଧ୍ୟ ତାଡ଼ି ଯାଏ । ମିସିସିପି-ଜନ୍ମଭୂମିକୁ ପୃଥିବୀର ଅନ୍ୟତମ ଅତ୍ୟୁତ୍କୃଷ୍ଟ ଗୋଚର-ପ୍ରଦେଶ । ଉ: ଅମେରିକାକୁ ଅତି ଥଣ୍ଡା ଉତ୍ତର ପବନର ଦାଉରୁ ରକ୍ଷା କରିବା ପାଇଁ କୌଣସି ପର୍ବତ-ପ୍ରତିବନ୍ଧକ ନାହିଁ । ଏଣୁ ଏ ଶୀତଳ ସୁମେରୁ-ବାୟୁ ବହି ଆସି କେନ୍ଦ୍ରୀକ ସମତଳର ଗଛ ପତ୍ର ନଷ୍ଟ କରିଦିଏ, ଫ୍ଲୋରିଡ଼ାର କମଳାଗଛ ମଧ୍ୟ ନାରଖାର କରି ପକାଏ କେବେ କେବେ ଏ ପବନ ଯୋଗେ ମିସିସିପି-ମୁହାଣ ଘନୀଭୂତ ହୋଇ ପଡ଼େ । ପଶ୍ଚିମ ଉଚ୍ଚଭୂମିକୁ ପ୍ରଶାନ୍ତ ମହାସାଗର ଆଡ଼ୁ ବହି ଆସିବା ଆର୍ଦ୍ର ତାକୁ ଅଟକ ରଖେ—ଫଳରେ, ଯୁକ୍ତରାଜ୍ୟର ଅଧିକାଂଶ ଏପରି ଶୁଷ୍କ ହୋଇ ପଡ଼େ ଯେ, କୃତ୍ରିମ-ଜଳ-ଯୋଗାଡ଼ ବ୍ୟତିରେକେ ସେଠାରେ କୃଷି କରିବା ଏକାନ୍ତ ଅସମ୍ଭବ । ପଶ୍ଚିମଦ୍ରାଘିମା ୧୦୮ ଡିଗ୍ରୀର ପଶ୍ଚିମସ୍ଥିତ ଯୁକ୍ତରାଜ୍ୟାଂଶକୁ (ପ୍ରଶାନ୍ତୋପକୂଳ ପ୍ରଦେଶ ଛଡ଼ା) ଖୁବ୍ ଶୁଷ୍କ ରହେ—ଏଠାରେ ଫସଲ ଭଲ ହୁଏ ନାହିଁ । ଦେଶର ଏ ଭାଗକୁ ବୃକ୍ଷହୀନ କହନ୍ତି ତୃଣାଚ୍ଛନ୍ନ । ଏଠାରେ ବଡ଼ ବଡ଼ ଗୋଚାରଣ-ଭୂମି ଦେଖାଯାଏ ।

ଉତ୍ତର ଆମେରିକାର ସୁବିସ୍ତୀର୍ଣ୍ଣ ଉତ୍ତରପ୍ରାନ୍ତ ଓ ତନ୍ନିକଟବର୍ତ୍ତୀ ଦ୍ୱୀପସକଳ ଅତ୍ୟନ୍ତ ଶୀତଳ, ସୁତରାଂ ଅନୁର୍ବର । ସେଠାର ଭୂମି ସର୍ବଦା ବରଫ-ଘନୀଭୂତ ହୋଇ ପଡେ । ଅତଏବ ସେଠାରେ କୌଣସି ବୃକ୍ଷ ଜନ୍ମେ ନାହିଁ । ଏସିଆର Tundra ଭଳି, ଏ ଭାଗକୁ ଅତିରିକ୍ତ ଅନୁର୍ବର । ଏହାର କିଛି ଦକ୍ଷିଣରେ ଗଛ ଦେଖାଯାଏ । ଆହୁରି ଦକ୍ଷିଣରେ (ଏସିଆ ପରି) ଦେବଦାରୁ ଜାତୀୟ ବଣ ଦେଖାଯାଏ । ଉତ୍ତର-କାନାଡ଼ା

(ଆଟ୍‌ଲାଣ୍ଟିକ୍ ଠାରୁ ପ୍ରଶାନ୍ତ ମହାସାଗର ଯାଏ) ଏହା ବନରେ ଆଚ୍ଛନ୍ନ । ଏହି Cone-bearing ଅରଣ୍ୟର ଦକ୍ଷିଣ ଭାଗରେ, ଏସିଆ ଭଳି, ତୃଣଭୂମି ଓ ପତ୍ରପ୍ରାନ୍ତର (Steppes) ଅବସ୍ଥିତ । ଆମେରିକାରେ ଏ ସମସ୍ତ ତୃଣଭୂମି ଓ ପତ୍ରପ୍ରାନ୍ତରକୁ "Prairies" କହନ୍ତି । 'Prairie'ର ଅର୍ଥ ତୃଣସମାଚ୍ଛନ୍ନ ବୃକ୍ଷବିହୀନ ବିସ୍ତୀର୍ଣ୍ଣ କ୍ଷେତ୍ର ବା ପ୍ରାନ୍ତର । ଏହାର ଅଧିକାଂଶ ଗହମ-କ୍ଷେତ୍ର ।

ଏହି ତୃଣଭୂମିରେ ବର୍ତ୍ତମାନ କୃଷି କରାଯାଉଅଛି ଏବଂ ଏହା ଚରାଭୂମି ରୂପେ ବ୍ୟବହୃତ ହେଉଅଛି । ମିସିସିପି-ନିମ୍ନଭୂମିରେ ଓ Winnipeg ହ୍ରଦ ଚତୁର୍ଦ୍ଦିଗରେ ଗହମ ଅଦାୟ କରାଯାଏ । ଏହା କାନାଡ଼ାର ପ୍ରଧାନ ଫସଲ । ଏହି ଗହମ-ପ୍ରଦେଶର ଦକ୍ଷିଣରେ ବଡ଼ ବଡ଼ ହ୍ରଦପୁଞ୍ଜ ଓ ମେକ୍‌ସିକୋ ଉପସାଗର ମଧ୍ୟରେ ଥିବା ଉଷ୍ଣ ପ୍ରଦେଶରେ ମକା ଜାତ ହୁଏ । ଆହୁରି ଦକ୍ଷିଣରେ ,ମେକ୍‌ସିକୋ ଉପସାଗର ଚତୁର୍ଦ୍ଦିଗସ୍ଥ ଅଧିକ ଉଷ୍ଣ, ଆର୍ଦ୍ର ଭୂମିରେ କପାଚାଷ ହୁଏ । ସମଗ୍ର ପୃଥିବୀରେ ବ୍ୟବହୃତ କପାର ଅଧିକାଂଶ ଏଠାରେହିଁ ଅଦାୟ କରା ହୁଏ । ଏହି ଉଷ୍ଣ ପ୍ରଦେଶରେ —ମିସିସିପି-ମୁହାଣରେ—ବେଶି ଧୂଆଁପତ୍ର ଓ ଆଖୁ ମଧ୍ୟ ଜନ୍ମେ । ଲୋକେ ଯେଉଁ ଧୂଆଁପତ୍ର ନଳ (Pipe)ରେ ଭରାଇ କରି ଧୂମପାନ କରନ୍ତି, ତାହାର ଅଧିକାଂଶ ଉତ୍ତର ଅମେରିକାରେ ଉତ୍ପାଦିତ ହୁଏ ।

ଦକ୍ଷିଣ ଆମେରିକା:—

ଦକ୍ଷିଣ ଅମେରିକାର ସମଗ୍ର ବିସ୍ତୃତଭାଗ ଗ୍ରୀଷ୍ମ ମଣ୍ଡଳରେ ଅବସ୍ଥିତ । ଏଣୁ ଏଠାରେ (ଉଚ୍ଚ ପର୍ବତ ବ୍ୟତୀତ) ସକଳ ଋତୁରେ ଭାରି ଗରମ ହୁଏ । ଏ ମହାଦେଶର ସଂକୀର୍ଣ୍ଣ ଦକ୍ଷିଣ ପ୍ରାନ୍ତଟି ଖୁବ୍ ଥଣ୍ଡା । ତେବେ କେବଳ ପର୍ବତ ଛଡ଼ା, ଦକ୍ଷିଣ ଅମେରିକାର ଏପରି କୌଣସି ଶୀତଳ ଭାଗ ନାହିଁ ଯେଉଁଠାରେ ଜଳ ଘନୀଭୂତ ହୋଇପାରେ । ଉତ୍ତର-ପୂର୍ବ ଓ ଦକ୍ଷିଣ-ପୂର୍ବ ବାଣିଜ୍ୟବାୟୁ ଆଟ୍‌ଲାଣ୍ଟିକ୍‌ରୁ ବହି ଯାଇ

ଦ: ଆମେରିକାର ଅନେକ ଭାଗରେ ପ୍ରଚୁର ବୃଷ୍ଟି ହୁଏ । ବର୍ଷର ପ୍ରାୟ ପ୍ରତ୍ୟେକ ମାସ, ଆମେଜାନ୍-ନିମ୍ନଭୂମିରେ ପ୍ରବଳ ବୃଷ୍ଟିପାତ ହୋଇଥାଏ । ଏଣୁ ଆମେଜାନ୍ ନଦୀ ଏତେ ବଡ଼ ! ତାହାର ଉପନଦୀ-ସଂଖ୍ୟା ଏତେ ଅଧିକ ! ହିମାଳୟ ଯେପରି ନଦୀ ଯୋଗେ ଭାରତ ମହାସାଗରକୁ ମୌସୁମି ବର୍ଷା ଫେରାଇଦିଏ, ଆଣ୍ଡିଜ୍ ସେପରି ନଦୀ ଦ୍ୱାରା ଆଟ୍ଲାଣ୍ଟିକ୍ ମହାସାଗରକୁ ଅଦ୍ରତା ଫେରାଇଦିଏ । ଆଣ୍ଡିଜ୍‌ର ପଶ୍ଚିମ ଭାଗରେ, ବିଷୁବରେଖାର ଦକ୍ଷିଣରେ, ଦକ୍ଷିଣ-ପୂର୍ବ ବାଣିଜ୍ୟବାୟୁ ସମୁଦ୍ରକୂଳ ଆଡକୁ ନ ବହି ଉପକୂଳରୁ ବହୁ ଦୂରକୁ ବହିଯାଏ; ସୁତରାଂ ଉପକୂଳର ଏହି ଭାଗଟିରେ ବର୍ଷା ପ୍ରାୟ ପଡ଼େ ନାହିଁ କହିଲେ ଚଳେ । ସୁଦୂର ଦକ୍ଷିଣାଞ୍ଚଳର କଥା ସ୍ୱତନ୍ତ୍ର । ସୁଦୂର ଦକ୍ଷିଣ ଭାଗଟି ପଶ୍ଚିମ-ବାୟୁର ମାର୍ଗରେ ଅବସ୍ଥିତ । ଅବଶ୍ୟ ପଶ୍ଚିମ-ପବନ ଆଣ୍ଡିଜ୍‌ରେ ଅଟକି ରହେ, ପୂର୍ବୋପକୂଳକୁ ବର୍ଷା-ମେଘ ବୋହି ନେଇ ପାରେ ନାହିଁ । ଅତଏବ **Plate estuary** ବା **La Plata**ର ଦକ୍ଷିଣ ଭାଗଟି ଶୁଷ୍କ, ନୀରସ—ଏଠାର ଅଧିକାଂଶ ପ୍ରସ୍ତରମୟ ମରୁଭୂମି । ଅଥଚ ମୋଟରେ, ଦକ୍ଷିଣ ଆମେରିକାରେ ଢେର ବର୍ଷା ହୁଏ । **Peru** ଓ **Chile**ର ଉପକୂଳ, ମଧ୍ୟ-ଆଣ୍ଡିଜ୍‌ର ମାଳଭୂମିସକଳ ଏବଂ **Tierra del Fuego** ଠାରୁ ଉତ୍ତର ଦିଗରେ ବିସ୍ତାରିତ ପୂର୍ବୋପକୂଳର କେତେକାଂଶ ଶୁଷ୍କ । ଏ ସମସ୍ତ ସ୍ଥାନହିଁ ଦକ୍ଷିଣ ଆମେରିକାର ନୀରସ ପ୍ରଦେଶ । ଉପରୋକ୍ତ ପେରୁ ଓ ଉତ୍ତର-ଚିଲିର ଉପକୂଳ ଭାରତର ସିନ୍ଧୁପ୍ରଦେଶ ଅପେକ୍ଷା ଅଧିକ ଅନୁର୍ବର ।

ଆଫ୍ରିକାରେ ଯେପରି ଉଦ୍‌ଭିଦ ଜନ୍ମେ, ଦକ୍ଷିଣ ଆମେରିକାରେ ବ ସେହିପରି ହୁଏ । କଙ୍ଗୋବନ ସହିତ ବିଷୁବରେଖାର ଉଭୟପାର୍ଶ୍ୱସ୍ଥିତ ଆମେଜାନ୍-ଅବବାହିକାର ପ୍ରକାଣ୍ଡ ଅରଣ୍ୟ ପ୍ରଦେଶର ଠିକ୍ ତୁଳନା କରାଯାଇପାରେ । ଅତ୍ୟଧିକ ତାପ ଓ ପ୍ରବଳ ବୃଷ୍ଟିପାତ ଯୋଗେ ମହାଦେଶର

ଏ ଅଞ୍ଚଳଟି ବିଶାଳ ଗ୍ରୀଷ୍ମମଣ୍ଡଳୀୟ ଜଙ୍ଗଲରେ ଆଚ୍ଛାଦିତ। ଏହା ହେଉଛି ପୃଥିବୀର ବୃହତ୍ତମ ଅରଣ୍ୟାନୀ। ଆଫ୍ରିକାର କଙ୍ଗୋ ଭଳି, ଏଠାରେ ମଧ୍ୟ ଲତାସବୁ ଗଛ ଚଢ଼ି ସୂର୍ଯ୍ୟାଲୋକ ପାଇବା ପାଇଁ ଉପରକୁ ଉଠିଥାଏ। ଏ ଅରଣ୍ୟ ପ୍ରାୟ ଦୁର୍ଭେଦ୍ୟ, ଅନଧିଗମ୍ୟ। କେଉଁ ଉପାୟରେ ଏ ବନ ମଧ୍ୟରେ ପ୍ରବେଶ ବା ଯାତ୍ରା କରିବାକୁ ହୁଏ, ତାହା ପୂର୍ବ ପରିଚ୍ଛେଦରେ କହାଯାଇଅଛି। ଏ ଅରଣ୍ୟର ଅନେକ ଭାଗ ଆଜି ସୁଦ୍ଧା ଆବିଷ୍କୃତ ହୋଇ ପାରି ନାହିଁ। ଅଳ୍ପ କେତୋଟି ଅସଭ୍ୟଜାତି ମାତ୍ର ଏଠାରେ ବାସ କରନ୍ତି। ସ୍ପେନ୍ ଔପନିବେଶିକମାନେ ଏ ଅରଣ୍ୟକୁ 'Selvas' ଆଖ୍ୟା ଦେଇ ଅଛନ୍ତି। ଏ ବନର ଉତ୍ତର ଓ ଦକ୍ଷିଣ ଭାଗରେ ବର୍ଷତମାମ ବର୍ଷା ହୁଏ ନାହିଁ—ସେଠାରେ ସୁବିସ୍ତୀର୍ଣ୍ଣ ତୃଣଭୂମି (Savannah lands) ଦେଖାଯାଏ। ସ୍ପେନଜାତି (Spaniards) ଏ ତୃଣଭୂମିର ବିଭିନ୍ନ ଭାଗକୁ (ସେମାନଙ୍କ ଭାଷାରେ) ବିଭିନ୍ନ ନାମ ଦେଇଅଛନ୍ତି। ଓରିନୋକ-ଅବବାହିକାର ତୃଣଭୂମିକୁ 'Ilanos' କହନ୍ତି। ଆମେଜାନ୍ ଠାରୁ Plate estuary ପର୍ଯ୍ୟନ୍ତ ପ୍ରସାରିତ ତୃଣଭୂମିକୁ 'Campos' ଏବଂ ଏ ମହାଦେଶର ପଶ୍ଚିମ ଭାଗରେ ଥିବା ତୃଣଭୂମିକୁ 'Pampas' ବୋଲି ଯାଏ। Ilanos ଓ Camposର ସ୍ଥାନେ ସ୍ଥାନେ, ପ୍ରଧାନତଃ ନଦୀମାନଙ୍କର କୂଳରେ ତଟରେ, ବଣ ଦେଖାଯାଏ। କିନ୍ତୁ ଦକ୍ଷିଣ ଭାଗର Pampas, କାନାଡ଼ାର Prairies ଓ ଦକ୍ଷିଣ-ଆଫ୍ରିକାର Veldt ପରି, ପ୍ରାୟ ବୃକ୍ଷହୀନ—ଏଠାରେ କମ୍ ବର୍ଷା ହୁଏ। Pampasର ଅନେକ ଭାଗରେ କୃଷି ହୁଏ—ଗହମ, ମସୀନା (linseed) ଓ lucerne (ପଶୁଭୋଜ୍ୟ ଉଦ୍ଭିଦ ବିଶେଷ) ଆଦାୟ କରାଯାଏ।

ପ୍ରଶ୍ନ— ଏସିଆର ଉତ୍ତରଭାଗ ସହିତ ଉତ୍ତର ଆମେରିକାର ଉତ୍ତର-ଅଞ୍ଚଳଟିର କି ସାଦୃଶ୍ୟ ଦେଖାଯାଏ ?

ଅତି ଶୀତଳ ଉତ୍ତର-ବାୟୁ ଉତ୍ତର ଆମେରିକାର କ୍ଷତି କରେ ?
ଦକ୍ଷିଣ ଆମେରିକାର କେଉଁ କେଉଁ ଭାଗ ଅତି ଶୀତଳ, ଅନୁର୍ବର ?
llanos, Campos, Pampas ଓ Selvas କଣ ?
ଆଫ୍ରିକା-ବନ ସହିତ ଦକ୍ଷିଣ ଆମେରିକା-ଅରଣ୍ୟର ତୁଳନା କର ?

---

## (B) କାନାଡା

ଗ୍ରୀନ୍‌ଲ୍ୟାଣ୍ଡ୍ ଡେନ୍‌ମାର୍କ ଦେଶର ଏବଂ ଅଲାସ୍କା-ଉପଦ୍ୱୀପ ଯୁକ୍ତରାଜ୍ୟର ଶାସନାଧୀନ । ନ୍ୟୁଫାଉଣ୍ଡ୍‌ଲ୍ୟାଣ୍ଡ୍ ଓ Labrador ଉପକୂଳ, ବ୍ରିଟିଶ୍ ହେଲେହେଁ, ପୃଥକ୍ ଶାସନାଧୀନ । ଏ ସମସ୍ତ ପ୍ରଦେଶ ଛଡ଼ା, ଉତ୍ତର ଆମେରିକାର ସମଗ୍ର ଉତ୍ତରାର୍ଦ୍ଧକୁ 'କାନାଡାରାଜ୍ୟ' (Dominion of Canada) କହନ୍ତି । କାନାଡାରାଜ୍ୟ ଅନେକ ପ୍ରଦେଶ ବା Provinceରେ ବିଭକ୍ତ:—

(କ) ଉପସାଗର-ପ୍ରଦେଶ (Gulf Provinces):— ନ୍ୟୁଫାଉଣ୍ଡଲଣ୍ଡ; ନୋବା ସ୍କୋସିଆ; କେପ୍‌ବ୍ରିଟନ ଦ୍ୱୀପ ଓ ନ୍ୟୁବ୍ରାନ୍‌ସୱିକ୍ ।

(ଖ) ହ୍ରଦ-ପ୍ରଦେଶ (Lake Province):— କ୍ୱିବେକ୍; ଓଣ୍ଟେରିଓ ଓ ମଣ୍ଟ୍ରିଅଲ୍ ।

(ଗ) ତୃଣଭୂମି-ପ୍ରଦେଶ (The Prairie Province):—
ମାନିଟୋବା; Saskatchewan; Alberta.

(ଘ) ପ୍ରଶାନ୍ତ-ପ୍ରଦେଶ (The Pacific Province):—
ବ୍ରିଟିଶ୍ କଲମ୍ବିଆ; ଉତ୍ତର-କାନାଡ଼ା ।

୧ କାନାଡ଼ାର ପ୍ରାକୃତିକ ବିଭାଗ (natural divisions):—

(କ) ଉତ୍ତର-ସମତଳ; ଉତ୍ତର ଅରଣ୍ୟ—ଶୀତଳ, ଅନୁର୍ବର ପ୍ରଦେଶ

(ଖ) ମଧ୍ୟ-ସମତଳ—prairiesର ଉତ୍ତର ଭାଗ ।
(ଗ) ପଶ୍ଚିମ-ସମତଳ—ଅଲ୍ଲୀ ଉଚ୍ଚଭୂମିର ପୂର୍ବଭାଗ ।
(ଘ) ପଶ୍ଚିମପ୍ରାନ୍ତ—ସମଶୀତୋଷ୍ଣ ପ୍ରଦେଶ ।

୬ ବ୍ୟବସାୟ (occupations):—

କାନାଡ଼ା-ବାସିଙ୍କର ପ୍ରଧାନ ବୃତ୍ତି କୃଷି; ଅଥଚ ଅତ୍ୟଳ୍ପ ଭୂମିରେ ମାତ୍ର କୃଷି ହୁଏ । କାନାଡ଼ାର ଉତ୍ତର ଓ ଉତ୍ତର-ପୂର୍ବ ଅଞ୍ଚଳର ଜଳବାୟୁ ଶସ୍ୟୋତ୍ପାଦନର ଉପଯୋଗୀ ନୁହେ । ହଡ୍‌ସନ୍ ଉପସାଗର ଚତୁର୍ଦ୍ଦିଗସ୍ଥ ବରଫାଚ୍ଛନ୍ନ ଭୂମି କୃଷିର ଆଦୌ ଅନୁକୂଳ ନୁହେ । ପଶ୍ଚିମ ଭାଗର ପାର୍ବତ୍ୟ ପ୍ରଦେଶଟି କୃଷିଯୋଗ୍ୟ ନୁହେ । ଯାହାହେଉ, ଏ ସମସ୍ତ ଅଞ୍ଚଳ କ୍ରମଶଃ କୃଷିର ଉପଯୋଗୀ କରାଯାଉଅଛି ।

କାନାଡ଼ାରାଜ୍ୟର ପ୍ରଧାନ ଶସ୍ୟ ଗହମ । ଗହମ-ଉତ୍ପାଦନରେ ଭାରତବର୍ଷ (ବ୍ରିଟିଷ୍ ସାମ୍ରାଜ୍ୟ ମଧ୍ୟରେ) ପ୍ରଥମ ସ୍ଥାନ ଅଧିକାର କରିଅଛି । ଏ କ୍ଷେତ୍ରରେ କାନାଡ଼ାର ସ୍ଥାନ ହେଉଛି ଦ୍ୱିତୀୟ । ଓଣ୍ଟେରିଓ, ମାନିଟୋବା ଓ praierie ପ୍ରଦେଶରେ ଯଥେଷ୍ଟ ଗହମ ଫସଲ ହୁଏ । ଏହି ସମସ୍ତ ସ୍ଥାନରେ oats, ଗୋଲଆଳୁ ଓ ଅନ୍ୟାନ୍ୟ ପଦାର୍ଥ ମଧ୍ୟ ଆଦାୟ କରାଯାଏ । କାନାଡ଼ାର କେନ୍ଦ୍ରିକ ବା ମଧ୍ୟ-ସମତଳକୁ 'Prairie Province' କହନ୍ତି । ମାନିଟୋବା, Saskatchewan ଓ ଅଲ୍‌ବେରଟା ଏହାର ଅନ୍ତର୍ଗତ । Prairie ପ୍ରଦେଶଟି ପଶ୍ଚିମ ଦିଗରେ ପ୍ରସାରିତ । ଉପରୋକ୍ତ ତିନୋଟି ପ୍ରଦେଶ ହେଉଛି କାନାଡ଼ାରାଜ୍ୟର ବୃହତ୍, ଅତିଫଳବତୀ ଶସ୍ୟ-ଭୂମି (corn-lands). ଏଣୁ ୟୁରୋପ ଓ ଯୁକ୍ତରାଜ୍ୟର ଅନେକ ଲୋକ ଏଠାରେ ଉପନିବେଶ କରି ରହିଅଛନ୍ତି । ଏ ତିନି ପ୍ରଦେଶ ଗହମୋତ୍ପାଦନର ଉପଯୁକ୍ତ ସ୍ଥାନ । ଏହି ସମସ୍ତ ତୃଣ-ପ୍ରଦେଶ ଜଗତର ଅନ୍ୟତମ ଶସ୍ୟପ୍ରଦ ସ୍ଥାନ—ରୁଷିଆ ଅପେକ୍ଷା ଅଧିକ ବିସ୍ତୃତ, ଭାରତ ଓ ମିଶର ଅପେକ୍ଷା ଅଧିକ ଶସ୍ୟଶାଳୀ । ଆଜକୁ

ପ୍ରାୟ ୪୦ ବର୍ଷ ହେଲା ମାନିଟୋବା-ପ୍ରଦେଶ-ଜାତ ଗହମର ପରିମାଣ ପ୍ରାୟ ୬୦୦ ଗୁଣ ବଢିଅଛି ।

କାନାଡ଼ାର କ୍ୱିବେକ୍ ପ୍ରଦେଶଟି କାଠ-କଟା (lumbering) ବ୍ୟବସାୟ ପାଇଁ ଚିରପ୍ରସିଦ୍ଧ । ଲରେନ୍ସ ନଦୀର ଉଭୟ ପାର୍ଶ୍ୱରେ ଦେବଦାରୁଜାତୀୟ (pine) ଓ Spruce-ବନ ଦେଖାଯାଏ । ଏଠାରୁ ବେଶି କାଠଗଣ୍ଡି ବାହାର କରାଯାଏ । ଏ ପ୍ରଦେଶର ସମସ୍ତ ହ୍ରଦ, ନଦୀ ଓ ଜଳପ୍ରପାତରେ ବଡ଼ ବଡ଼ କାଠଗଣ୍ଡି ବନ୍ଧନ କରିତକଲ କଳକଟିକୁ ଭସାଇ ଦିଆଯାଏ । ହ୍ରଦ, ନଦୀ ଓ ପ୍ରପାତର ଜଳରେ କାଠ-କଳର ଶକ୍ତି ହୋଇଥାଏ । କାନାଡ଼ାର ନଦୀମାନଙ୍କରୁ ପ୍ରଚୁର ପରିମାଣରେ ତଡ଼ିତ୍‌ଶକ୍ତି (electric power) ଉତ୍ପାଦିତ ହୁଏ । କାନାଡ଼ାରାଜ୍ୟର ମୋଟ କ୍ଷେତ୍ରଫଳର ପ୍ରାୟ ଏକ-ତୃତୀୟାଂଶ ବନ୍ୟ ପ୍ରଦେଶ । ଏ ଭାଗଟି କାଠ-ଚିରା ବ୍ୟବସାୟ ଯୋଗେ ଖୁବ୍ ପ୍ରାଧାନ୍ୟ ଲାଭ କରିଅଛି ।

କାନାଡ଼ାରେ ଖଣିଖୋଳା (mining) ବ୍ୟବସାୟ ଖୁବ୍ ଚଳେ, ଖଣିଜଦ୍ରବ୍ୟ ଢେର ମିଳେ । ପ୍ରଶାନ୍ତ ପ୍ରଦେଶଟି ଖନିଜ ପଦାର୍ଥ ନିମନ୍ତେ ପ୍ରସିଦ୍ଧ । ଏଠାର ପାର୍ବତ୍ୟ ଭାଗରୁ ବେଶି ସୁନା, ରୁପା, ସୀସା ଓ ତମ୍ବା ବାହାର କରାଯାଏ । ରକିପର୍ବତର କାଉଘର ଗିରିସଙ୍କଟ (Crow's Nest pass), ପଶ୍ଚିମୋପକୂଳର Queen Charlotte ଓ Vancoevur ଦ୍ୱୀପମାନଙ୍କରେ ଅନେକ କୋଇଲାଖଣି ଅଛି । ପଶ୍ଚିମୋପକୂଳରେ Vancouver ବନ୍ଦର ହେଉଛି କୋଇଲା-ବାଣିଜ୍ୟର ସର୍ବପ୍ରଧାନ ବଜାର ବା ମାର୍କେଟ୍ । ନ୍ୟୁବ୍ରାନ୍ସଉଇକ୍, ନୋବା ସ୍କୋସିଆ, କେପ୍ ବ୍ରିଟନ୍ ଦ୍ୱୀପର ଖଣିରୁ ମଧ୍ୟ କୋଇଲା ଆଦାୟ କରାହୁଏ । ନୋବା ସ୍କୋସିଆ ଓ ନ୍ୟୁଫାଉଣ୍ଡ୍‌ଲଣ୍ଡ୍‌ର କୋଇଲାଖଣି ପାଖରେ ଲୁହା ଖୋଳାଯାଏ । କେପ୍ ବ୍ରିଟନ୍‌ଦ୍ୱୀପର Sydneyରେ

ଲୌହ-ବ୍ୟବସାୟ୍ଟ ସୁନ୍ଦର ଚଳେ । ଅନ୍ୟାନ୍ୟ ସ୍ଥାନରେ ବି ଲୁହା ମିଳେ । ସୁପିରିଅର୍‌ହ୍ରଦର ପୂର୍ବ ତୀର ହେଉଛି ବୃହତ୍ତମ ଲୌହ-ଭଣ୍ଡାର । ୟୁକନ୍ ନଦୀତଟବର୍ତ୍ତୀ Klondike କ୍ଷେତ୍ରରୁ ବେଶି ସୁନା ବାହାର କରାଯାଏ ।

ଆଟ୍‌ଲାଣ୍ଟିକ-ଉପକୂଳର ଅଗଭୀର ଜଳରେ ପ୍ରଚୁର ମତ୍ସ୍ୟ ମିଳେ— ଏଠାର ପ୍ରଧାନତଃ କଡ୍ (Cod) ମାଛ ଅତି ମୂଲ୍ୟବାନ୍ । ମଧ୍ୟ-କାନାଡ଼ାର ହ୍ରଦସବୁ ମତ୍ସ୍ୟ-ପୂର୍ଣ୍ଣ । ବ୍ରିଟିଷ୍‌କଲମ୍ବିଆରେ, ବିଶେଷତଃ Fraser ନଦୀ ତଟରେ ବଡ଼ ବଡ଼ ମାଛ-ଅଡ୍ଡା ବା କାରଖାନା (Fisheries) ଦେଖାଯାଏ । ଏଠାର ସାମନ୍ (salmon) ମାଛ ବଡ଼ ବଡ଼ ଟିଣ-ପାତ୍ର(Can)ରେ ଭରତି କରାଯାଏ (canned). କାନାଡ଼ା ମତ୍ସ୍ୟ-ବ୍ୟବସାୟ୍ଟ ପାଇଁ ପ୍ରସିଦ୍ଧ । ସମୁଦ୍ର ଓ ନଦୀରେ ମାଛ ଧରା ହୁଏ । ଅନେକ ସାମନ୍ ମାଛ ସମୁଦ୍ରରୁ ଏଠାର ସମସ୍ତ ନଦୀକୁ ଆସିଥାନ୍ତି । ଏଠାର ମତ୍ସ୍ୟ-ବ୍ୟବସାୟିମାନେ ଅଧିକ ସଂଖ୍ୟାରେ ମାଛ ଧରି, ଟିଣପାତ୍ରରେ ଭରତି କରି ବିଦେଶକୁ ପଠାନ୍ତି । ଅନେକ ପ୍ରକାର ସମୁଦ୍ର-ମାଛ ଧରା ଯାଇଥାଏ । ସୀଲ୍ (Seal) ମାଛ ଧରିବା ପାଇଁ କାନାଡ଼ାରୁ ଉତ୍ତର-ଦ୍ୱୀପମାଳାକୁ ଅନେକ ଜାହାଜ ଯାଏ ।

୩ ଗମନାଗମନପଥ:—

କାନାଡ଼ାର ପୂର୍ବ ଭାଗରୁ ପଶ୍ଚିମ ଦିଗରେ ଅର୍ଥାତ୍ ମଣ୍ଟ୍ରିଅଲ୍ ଠାରୁ (Winnipeg ମାର୍ଗରେ) ପ୍ରଶାନ୍ତୋପକୂଳ ପର୍ଯ୍ୟନ୍ତ ଦୁଇଗୋଟି ପ୍ରଧାନ ରେଳପଥ ଯାଇଅଛି । (କ) ମଧ୍ୟ-ମହାଦେଶୀୟ କାନାଡ଼ା-ପ୍ରଶାନ୍ତ-ରେଳପଥ (The Trans-Continental Canadian Pacific Railway). ଏହି ପଥଟି Regina, Moose Jaw ଓ Calgary ବାଟେ, ରକି ପର୍ବତର Kicking Horse Passରେ, କେତୋଟି ସୁଡ଼ଙ୍ଗ ଓ ନଦୀ-ପୋଲ ପାର ହୋଇ (ଫ୍ରେଜର୍‌ନଦୀ-ମୁହାଣ ନିକଟସ୍ଥ) Vancouver କୁ ଚାଲିଅଛି । ଏହି ରେଳମାର୍ଗର ପଶ୍ଚିମ-ପ୍ରାନ୍ତ

(terminus) Vancouver, ପୂର୍ବ-ପ୍ରାନ୍ତ Montreal.
(ଖ) The Grand Trunk Railway (G,T.R):—

ମଣ୍ଟ୍ରିଅଲ୍ ଠାରୁ ବାହାରି Winnipeg ଓ Edmonton ମାର୍ଗରେ, Yellow Head Pass ଉତ୍ତୀର୍ଣ୍ଣ ହୋଇ Prince Rupert ପୋତାଶ୍ରୟକୁ ଯାଇଅଛି ।

ମଣ୍ଟ୍ରିଅଲ୍ ଠାରୁ କାନାଡ଼ାମଧ୍ୟକୁ ନଦୀମାର୍ଗରେ ଜାହାଜ ଯାତ୍ରା ଆରମ୍ଭ ହୁଏ । ଲରେନ୍ସନଦୀର ଅତ୍ୟୁଗ୍ରବେଗ (rapids) ଓ ଜଳ-ପ୍ରପାତରେ ଗମନାଗମନର ଅସୁବିଧା ଦୂର କରିବା ପାଇଁ କେତୋଟି କେନାଲ ଖୋଲା ହୋଇଅଛି । ଜାହାଜସବୁ Welland Canalରେ ଏରିହ୍ରଦକୁ ଯାଏ, ଏରିରୁ ହୁରନ୍ ହ୍ରଦକୁ ଏବଂ ହୁରନ୍‌ରୁ ('Soo' canal ମାର୍ଗରେ) ସୁପିରିଅର ହ୍ରଦକୁ ଯାଏ । ଏ ସମସ୍ତ ହ୍ରଦ କାନାଡ଼ା ଓ ଯୁକ୍ତରାଜ୍ୟର ସହଜ, ସୁନ୍ଦର ଜଳମାର୍ଗ । ସୁଏଜ କେନାଲ ଅପେକ୍ଷା Soo କେନାଲରେ ଅଧିକ ଜାହାଜ-ଯାତ୍ରା, କାରବାର ହୋଇଥାଏ । କାନାଡ଼ାର ଦକ୍ଷିଣ-ପୂର୍ବ ଅଞ୍ଚଳରେ ମଧ୍ୟ ଅନେକ ରେଳସଡ଼କ ପଡ଼ିଅଛି । Ottawa ନଦୀ ଠାରୁ ସିଧା ପଶ୍ଚିମଦିଗରେ ହୁରନ୍ ହ୍ରଦ ପର୍ଯ୍ୟନ୍ତ ଗୋଟିଏ କେନାଲ ଖୋଲା ଯାଇଛି । ଏହା ଏ ଅଞ୍ଚଳର ପ୍ରଧାନ ଜଳପଥ । ସୁପିରିଅର୍ ହ୍ରଦର ପଶ୍ଚିମ ଭାଗରେ ପ୍ରଧାନତଃ ରେଳପଥ ଯୋଗେ ବେଶି ବାଣିଜ୍ୟ ଚଳେ । Winnipeg ରୁ ପଶ୍ଚିମଦିଗରେ ଅସଂଖ୍ୟ ରେଳମାର୍ଗ ନିର୍ମିତ ହୋଇଅଛି । Saskatchewanର ରାଜଧାନୀ—Regina ଅନ୍ୟତମ ପ୍ରଧାନ ରେଳପଥ କେନ୍ଦ୍ର ।

୪ କାନାଡ଼ାର ସହର ଓ ବନ୍ଦର:—

St Johns ନ୍ୟୁଫାଉଣ୍ଡ୍‌ଲଣ୍ଡ୍‌ର ରାଜଧାନୀ, ମତ୍ସ୍ୟ ବ୍ୟବସାୟର ପ୍ରଧାନ କେନ୍ଦ୍ର । ଏଠାରେ ଅତି ଉତ୍ତମ ଏକ ପୋତାଶ୍ରୟ ଅଛି । ଶୀତ-ଋତୁରେ ଏହା କାନାଡ଼ାରାଜ୍ୟର ସମୁଦ୍ର-ଦ୍ୱାର ହୋଇଥାଏ । ଅମେରିକାର

ବନ୍ଦରମାନଙ୍କ ମଧ୍ୟରେ ଏହା ହେଉଛି ଗ୍ରେଟ୍‌ବ୍ରିଟେନ୍‌ର ନିକଟତମ ବନ୍ଦର । ଏଣୁ ଆଶା କରାଯାଏ, ଦିନେ ଏହା ବିଶାଳ ମଧ୍ୟ-ଆଟ୍‌ଲାଣ୍ଟିକ-ମାର୍ଗର ମହାସାଗରୀୟ-ପ୍ରାନ୍ତ (terminus) ହୋଇ ଉଠିବ ।

Halifax ନୋଭା ସ୍କୋସିଆର ପ୍ରଧାନ ନଗର, ପ୍ରଧାନ ବନ୍ଦର ଓ ବରଫମୁକ୍ତ ପୋତାଶ୍ରୟ । ଶୀତ ଦିନେ ଲରେନ୍ସ ମୁହାଣ ବରଫରୁଦ୍ଧ ହୋଇ ପଡ଼ିବାବେଳେ ଏହି ସହରଟି କାନାଡାର ପୂର୍ବ ବନ୍ଦର ରୂପେ ବ୍ୟବହୃତ ହୋଇଥାଏ । ତିମି ଯୋଗେ ଏହା କାନାଡାର ଗୋଟିଏ ଅତି ପ୍ରଧାନ ସହର ହୋଇ ଉଠିଅଛି । ଏହା କାନାଡ଼ାର ଅନ୍ୟତମ ଆଟଲାଣ୍ଟିକ୍ ଦ୍ୱାର । ଏଠାରୁ ଦୁଇଟି ରେଲପଥ କ୍ୱିବେକ୍ ଓ ମଣ୍ଟ୍ରିଅଲ୍‌କୁ ଯାଇଅଛି ।

କ୍ୱିବେକ୍ ପ୍ରଦେଶର ରାଜଧାନୀ Quebec. ସୁଗଭୀର ପୋତାଶ୍ରୟ ଯୋଗେ ଏହାର ପ୍ରାଧାନ୍ୟ—ଏଠାରେ ବଡ଼ ବଡ଼ ଷ୍ଟୀମାର୍ ରହେ । ଏହା ଉ: ଆମେରିକାର ଅନ୍ୟତମ ଅତ୍ୟୁତ୍କୃଷ୍ଟ ପୋତାଶ୍ରୟ । କାଠଗଣ୍ଡି ସହରକୁ ଭାସି ଆସେ ଏବଂ ଏଠାର କାଠ-ବ୍ୟବସାୟୀମାନେ ଏ କାଠ-ନଦୀରେ ଏ ଗଣ୍ଡି ସବୁ ଟାଣି, ଚିର ଫଟା କରନ୍ତି, ନାନା ରକମ ଗୃହୋପକରଣ ତିଆରି କରି ବିଦେଶକୁ ପଠାନ୍ତି ।

Montreal କାନାଡ଼ାର ବୃହତ୍ତମ ନଗର, ପ୍ରଧାନ ସାଗର-ବନ୍ଦର, ପ୍ରଧାନ ବାଣିଜ୍ୟ-କେନ୍ଦ୍ର । ଏଠାରେ ବଡ଼ ବଡ଼ ମହାସମୁଦ୍ର-ଷ୍ଟୀମରର ମାଲ ସବୁ ଛୋଟ ଛୋଟ ଜାହାଜକୁ ବଦଳାଇ ଦିଆ ଯାଏ । ଏହା ନୌକା ଓ ରେଲ ମାର୍ଗ ଯାତ୍ରାର ଏବଂ ସାଗର-ବାଣିଜ୍ୟର ମିଳନ-ସ୍ଥଳ ।

Ottawa ନଦୀ ତୀରବର୍ତ୍ତୀ Ottawa କାନାଡାର ରାଜଧାନୀ । ଏ ନଗରରେ କାନାଡ଼ାରାଜ୍ୟର ମହାସଭା (parliament) ବସେ । ଏହା କାନାଡ଼ାର ପ୍ରଧାନ କାଠକଟା-କେନ୍ଦ୍ର (lumber centre.) ବଣର

କାଠଗଣ୍ଡି ନଦୀରେ ଏଠାକୁ ଭାସି ଆସେ ଏବଂ ଏଠା ଲୋକେ କାଠ-ଗଣ୍ଡି କରତ pulp ପ୍ରସ୍ତୁତ କରନ୍ତି । ନଦୀର ଜଳଶକ୍ତିରେ ଧଆ-ସିଲାଇକଳ, ମଇଦାକଳ, ବୈଦ୍ୟୁତିକ ରେଲ-ଏଞ୍ଜିନ୍ ଚାଲେ ଏବଂ ନଗରରେ ବହୁଳଆଲୁଅ ଦିଆ ଯାଏ ।

ଓଣ୍ଟେରିଓପ୍ରଦେଶର ପ୍ରଧାନନଗର Toronto. ସୁପିରିଅର୍ ହ୍ରଦର ପଶ୍ଚିମ ଭାଗରେ Fort William ଓ Port Arthur. ଏ ଦୁଇ ସହରକୁ ରେଲ ଓ ଜାହାଜରେ ପଶ୍ଚିମ-ତୃଣ ପ୍ରଦେଶର ଗହମ ଆସେ । Ottawa-Port Arthur—ମଧ୍ୟବର୍ତ୍ତୀ ରେଲମାର୍ଗରେ Sudbury ଅବସ୍ଥିତ । ଏଠାରେ ଜଗତର ସର୍ବୋତ୍କୃଷ୍ଟ nickel ଖଣି ଦେଖାଯାଏ । Sudburyର ଉତ୍ତରରେ Cobalt । ଏଠାରେ ଅଳ୍ପ ଦିନ ହେଲା ବଡ ବଡ଼ ରୁପାଖଣି କେତୋଟି ଆବିଷ୍କୃତ ହୋଇଅଛି ।

Winnipeg Red River ତଟରେ ଅବସ୍ଥିତ । ଏହା ପୃଥିବୀର ବୃହତ୍ତମ ଶସ୍ୟ-ବଜାର (grain-market). ଆମେରିକାର ଏହା ଏକ ସର୍ବପ୍ରଧାନ ରେଲପଥ-କେନ୍ଦ୍ର । ପ୍ରତ୍ୟେକ ରେଲମାର୍ଗ ଏ ସହର ବାଟେ ଯିବାକୁ ବାଧ୍ୟ, Saskatchewanର Regina ଓ Moosejaw କାନାଡ଼ା-ପ୍ରଶାନ୍ତ-ରେଲମାର୍ଗରେ ଅବସ୍ଥିତ । Al-bertaର ରାଜଧାନୀ Edmonton. ଦକ୍ଷିଣ ଦିଗସ୍ଥିତ Calgary ଗୋଟିଏ ଗୋପାଳନ-କେନ୍ଦ୍ର । Medicine Hat ଅନ୍ୟ ଏକ ଗୋପାଳନ-କେନ୍ଦ୍ର । ବ୍ରିଟିଶ୍ କଲମ୍ବିଆର ପ୍ରଧାନ-ନଗର ଓ ସମୁଦ୍ର-ବନ୍ଦର Vancouver. ଏହା ପୃଥିବୀର ଅନ୍ୟତମ ବରଫମୁକ୍ତ ସୁଦୃଢ଼ ପୋତାଶ୍ରୟ । କାନାଡ଼ାର ପ୍ରଧାନ ରେଲପଥସବୁ ଏଠାରେ ଶେଷ ହୋଇଅଛି । ଏ ପ୍ରଶାନ୍ତ-ବନ୍ଦରଠାରୁହିଁ ବାହାର ଷ୍ଟୀମର୍ ସବୁ ଜାପାନ୍, ଚୀନା, ଅଷ୍ଟ୍ରେଲିଆ ଓ ଉତ୍ତର ଆମେରିକାର ଅନ୍ୟାନ୍ୟ ସମସ୍ତ ପ୍ରଶାନ୍ତ-ବନ୍ଦରକୁ ଯାଇଥାଏ । Vancouver ଠାରୁ ଜାହାଜରେ କାନାଡାର

prairies-ଜାତ ଗହମ ୟୁରୋପକୁ, କାଠଖଣ୍ଡି New Yorkକୁ ପଠା-ଯାଏ । New Westminster. ସାମନ୍ ମାଛ-ବ୍ୟବସାୟର କେନ୍ଦ୍ର । Vancouver ଦ୍ୱୀପର ଦକ୍ଷିଣ ପ୍ରାନ୍ତରେ Victoria ସହର । ଏହା ନିକଟରେ Esquimalt. ଏ ଦୁଇଟି ବନ୍ଦରରେ ପୋତାଶ୍ରୟ ଅଛି ।

ପ୍ରଶ୍ନ:— କାନାଡାର କେଉଁ କେଉଁ ଅଞ୍ଚଳ କୃଷିର ଅନୁକୂଳ ନୁହେଁ ?
କାନାଡ଼ାର ବିଭିନ୍ନ ବ୍ୟବସାୟ ସମ୍ବନ୍ଧରେ କଣ ଜାଣ ?
କାନାଡ଼ାର ଗମନାଗମନ ମାର୍ଗ ବର୍ଣ୍ଣନା କର ।

—०ः०ः०—

## (C) ଯୁକ୍ତରାଜ୍ୟ

ପ୍ରାକୃତିକ ବିଭାଗ:—

୧ ଅଟ୍‌ଲାଣ୍ଟିକ୍ ଢାଲୁ ପ୍ରଦେଶ (The Atlantic slope):— ଏହି ନିମ୍ନ ପ୍ରଦେଶଟି ଉତ୍ତର ଦିଗରୁ ଦକ୍ଷିଣ ଦିଗକୁ କ୍ରମେ ଓସାର ହୋଇ ଯାଇଅଛି । ଆପଲାଚିଅନ୍‌ଉଚ୍ଚଭୂମିଜାତ ଅନେକ ନଦୀ ଏ ପ୍ରଦେଶ ମଧ୍ୟରେ ପ୍ରବାହିତ । ଏହା ଯୁକ୍ତ ପ୍ରଦେଶର ଅତି ଫଳବତୀ, ଅତି ଜନ-ବହୁଳ ଅଂଶ ।

୨ ବୃହତ୍ ସମତଳ:— ଆପଲାଚିଅନ୍ ଓ ରକି-ପର୍ବତଶ୍ରେଣୀ ମଧ୍ୟରେ ଅବସ୍ଥିତ । ଏଠାରେ ବଡ଼ ବଡ଼ ଗୋଚରଭୂମି ଦେଖାଯାଏ । ପ୍ରଚୁର ଗହମପ୍ରଦ ସୁପ୍ରସିଦ୍ଧ ତୃଣଭୂମି (prairies) ସବୁ ଏ ସମତଳର ଅନ୍ତର୍ଗତ ।

୩ ବୃହତ୍ ମାଳଭୂମି:— ରକି ପର୍ବତ ଓ ସିଅରା ନିବେଦା ଓ କ୍ୟାସ୍କେଡ୍ ଗିରିମାଳା ମଧ୍ୟରେ ବିସ୍ତୃତ । ଏହା ତିନି ଭାଗରେ ବିଭକ୍ତ:— (କ) ଉତ୍ତରରେ କଲମ୍ବିଅ-ଅବବାହିକା (ଖ) ଦକ୍ଷିଣରେ କୋଲରାଡ଼ୋ

ଅବବାହିକା। (ଗ) ମଧ୍ୟ ଭାଗରେ ବୃହତ୍ ଉଟା (Utah)-ଅବବାହିକା। ଏ ମାଳଭୂମିରେ ବର୍ଷା ହୁଏ ନାହିଁ, ତେଣୁ ଏହା ଫଳବନ୍ତ ନୁହେ, ଅଥଚ ଏହା ସୁନା ଓ ରୁପାଖଣିରେ ପୂର୍ଣ୍ଣ।

୪ ପ୍ରଶାନ୍ତ-ଢାଲୁ ପ୍ରଦେଶ:— ନବେଦା ଓ କ୍ୟାସ୍କେଡ୍ଠାରୁ ମହାସାଗର ଯାଏଁ ଏ ପ୍ରଦେଶ ପ୍ରସାରିତ।

ଜଳବାୟୁ:—

ଯୁକ୍ତ ରାଜ୍ୟର ପୂର୍ବୋପକୂଳ-ସମତଳ ପ୍ରଦେଶର ଜଳବାୟୁ ଗରମ। ଏ ପ୍ରଦେଶରେ ଭଲ ବର୍ଷା ହୁଏ; ତେଣୁ ଏହା ଖୁବ ଉର୍ବର। ଏ ପ୍ରଦେଶର ଉତ୍ତର ଭାଗରେ ଗହମ, ମଧ୍ୟ ଭାଗରେ ମକା ଏବଂ ଦକ୍ଷିଣରେ କପା ଓ ଧୂଆଁପତ୍ର ଆବାଦ କରାଯାଏ। ଆପଲଚିଅନ୍‌ର ଢାଲୁ ଭାଗରେ ଅନେକ ବିସ୍ତୃତ ଅରଣ୍ୟ ଦେଖାଯାଏ। ଏ ଅରଣ୍ୟର ପୃଷ୍ଠ ଭାଗରେ ବେଶି କୋଇଲା, ଲୁହା, ତେଲ ବାହାର କରାଯାଏ। ଉପକୂଳ-ସମତଳର ପ୍ରତ୍ୟେକ ସହରରେ ବେଶ୍ ବାଣିଜ୍ୟ ବ୍ୟବସାୟ ଚଳେ। ଏ ପ୍ରଦେଶର ପ୍ରସିଦ୍ଧ ସହର ସକଳ:— ନ୍ୟୁୟର୍କ; ଫିଲଡ଼େଲ୍‌ଫିଆ ଓ ବାଲ୍‌ଟିମୋର୍।

ବ୍ୟବସାୟ:—

କାନାଡ଼ା ଭଳି, ଯୁକ୍ତ ରାଜ୍ୟର ମଧ୍ୟ ପ୍ରାୟ ଏକ-ତୃତୀୟାଂଶ ଅରଣ୍ୟାବୃତ। ବର୍ତ୍ତମାନ ରାଜ୍ୟର କେବଳ ⅓ ଭାଗରେ କୃଷି ହେଉଅଛି। ଗହମ, ଯବ, ମକା, ଟମାଟୋ, କପା, ଧାନ ଓ ଆଖୁ ଯୁକ୍ତ ରାଜ୍ୟର ପ୍ରଧାନ କୃଷିଜାତ ପଦାର୍ଥ। ବୃହତ୍ କେନ୍ଦ୍ରୀକ ସମତଳରେ ଉତ୍ତରରୁ ଦକ୍ଷିଣ ଯାଏଁ ତାପ ଓ ଆର୍ଦ୍ରତା କ୍ରମେ ଅଧିକ ହୋଇ ଯାଇଅଛି। ତୃଣଭୂମିରେ ଗହମ ଓ oat ଆବାଦ ହୁଏ। ଫଳବତୀ କାଲିଫର୍ଣିଆ-ନିମ୍ନଭୂମିରେ ବେଶି ଗହମ ହୁଏ। ତୃଣପ୍ରଦେଶର ଦକ୍ଷିଣ ଭାଗରେ ଢେର ମକା ଫସଲ ହୁଏ। ୩୭ ଡିଗ୍ରୀ ଲଟିମାର ଦକ୍ଷିଣ ଭାଗ କପା-ଫସଲ ପାଇଁ ପ୍ରସିଦ୍ଧ।

ଅନ୍ୟାନ୍ୟ ଦେଶ ଅପେକ୍ଷା ଯୁକ୍ତରାଜ୍ୟରେ, ଅତ୍ୟଧିକ ସଂଖ୍ୟାରେ ଗାଈ ଗୋରୁ, ଘୁଷୁରି ପାଳିତ ହୁଅନ୍ତି । ମକା ଏମାନଙ୍କର ପ୍ରଧାନ ଖାଦ୍ୟ । ଏଣୁ ତୃଣପ୍ରଦେଶର ଦକ୍ଷିଣ ଭାଗରେ ଅନେକ ଗାଈ ଗୋରୁ ଓ ଘୁଷୁରି ଦେଖା ଯାନ୍ତି । ଉତ୍ତର-ପୂର୍ବ ଅଞ୍ଚଳରେ ଓ କାଲିଫର୍ଣିଆରେ ମଧ୍ୟ ଗୋପାଳନ-ବ୍ୟବସାୟ ସୁନ୍ଦର ଚଳେ । ଏହି ସମସ୍ତ ଅଞ୍ଚଳରେ ଦୁଧ, ଛେନା, ଲହୁଣି ବେଶି ପ୍ରସ୍ତୁତ କରା ହୁଏ । ଉଚ୍ଚ ସମତଳ ପ୍ରଦେଶର ଲୋକେ ମାଂସ ଓ ଚର୍ମ ପାଇଁ ଅନେକ ଗୋରୁ ପୋଷନ୍ତି ଏବଂ ପୂର୍ବ ଅଞ୍ଚଳକୁ ଗାଈ ଗୋରୁ ପଠାନ୍ତି । ଯୁକ୍ତରାଜ୍ୟର ଅନେକ ସ୍ଥାନରେ ମେଷ ପାଳିତ ହୁଏ—ମାଂସ ପାଇଁ ନୁହେଁ, ଲୋମ ସକାଶେ । ଉଚ୍ଚ ସମତଳ ପ୍ରଦେଶ ଓ ପଶ୍ଚିମ-ଉଚ୍ଚଭୂମିରେ ଗୋରୁ ଅପେକ୍ଷା ଅଧିକ ମେଣ୍ଢା ଦେଖା-ଯାନ୍ତି । ଏଠାର ଲୋକେ ଅଧିକସଂଖ୍ୟାରେ ଘୋଡ଼ା ଓ ଖଚର ବ ପୋଷି ୟୁରୋପକୁ ପଠାଇଥାନ୍ତି । ଯୁକ୍ତରାଜ୍ୟର କେଉଟମାନେ ଉତ୍ତର ମହା-ସାଗରରେ ଢିମି ମାଛ ଧରନ୍ତି । Chesapeake Bay ଠାରୁ ଉତ୍ତର ଦିଗରେ New foundland ପର୍ଯ୍ୟନ୍ତ ବିସ୍ତୃତ ପ୍ରଦେଶରେ ନାନା ରକମ ମାଛ ଧରା ଯାଏ । Massachussetts ର Gloucester ଏ ବ୍ୟବସାୟର କେନ୍ଦ୍ର । କଲମ୍ବିଆ ନଦୀ ଓ ଆଲାସ୍କା-ତୀର ଉତ୍ତର-ପଶ୍ଚିମୋପକୂଳର ଅନ୍ତର୍ଗତ । ଏଠାରେ ବଡ଼ ବଡ଼ ସାମନ୍ ମାଛ ମିଳେ । କଲମ୍ବିଆ ନଦୀ ତଟରେ ସା'ମନ ରନ୍ଧା ହୋଇ ଟିଣପାତ୍ରରେ ଭରିତ କରାଯାଏ । ଓଣ୍ଟେରିଓ ହ୍ରଦ ଛଡ଼ା, ଅନ୍ୟାନ୍ୟ ସମସ୍ତ ହ୍ରଦରୁ white fish, trout ଓ sturgeon ମାଛ ବାହାର କରାଯାଏ ।

ଯୁକ୍ତରାଜ୍ୟର ଖଣିଜ ପଦାର୍ଥ:— ଲୁହା, କୋଇଲା, ସୀସା, ସୁନା, ତମ୍ବା, ରଙ୍ଗ ବା ଦସ୍ତା (zinc) ଓ ପାରା (mercury),

ବ୍ୟବହାର୍ଯ୍ୟ ବସ୍ତୁ ନିର୍ମାଣ (manufacture):—

କଞ୍ଚା ମାଲର (raw materials) ପ୍ରାଚୁର୍ଯ୍ୟ ଓ ଜନସଂଖ୍ୟା—

ବୃଦ୍ଧି ଯୋଗେ ଯୁକ୍ତରାଜ୍ୟ ନିର୍ମିତ ଦ୍ରବ୍ୟ (manufacture) ପାଇଁ ଖୁବ ପ୍ରସିଦ୍ଧ । ଗୋରୁ ଓ ଘୁଷୁରି ମାଂସରେ ନାନା ପ୍ରକାର ଖାଦ୍ୟ ତିଆରି ହୁଏ । ଲୁହା, ଇସ୍ପାତରେ ବିବିଧ ପଦାର୍ଥ ପ୍ରସ୍ତୁତ ହୁଏ, କାଠକଣ୍ଠା, ମଇଦା ବ୍ୟବସାୟ ଚଳେ । ଲୋମ, କପା, ଚର୍ମ ବ୍ୟବସାୟ ବି ସୁନ୍ଦର ହୁଏ । ଯେଉଁ ଯେଉଁ ସ୍ଥାନରେ ବେଶି ମକା ଫସଲ ହୁଏ, ଲୋକେ ସେଠାରେ ଅନେକ ଗୋରୁ, ଘୁଷୁରି ମାରି ବିଦେଶକୁ ମାଂସ ପଠାନ୍ତି— ବରଫ ମଡାଇ କମ୍ପା ସଂରକ୍ଷିତ ଓ ଟିଣ ପାତ୍ରରେ ଭର୍ତ୍ତି କରି ରପ୍ତାନି କରନ୍ତି । ଚିକାଗୋରେ ଏହି ସମସ୍ତ ପଶୁଜାତ ଦ୍ରବ୍ୟର କାରବାର ହୁଏ । ଚିକାଗୋ ଓ ନ୍ୟୁୟର୍କରେ ନାନା ରକମ ଗୃହସାମଗ୍ରୀ (furniture) ତିଆରି କରା-ଯାଏ । ପଶ୍ଚିମ Pennsylvaniaରେ ବେଶି ଲୁହା, ଇସ୍ପାତ ପଦାର୍ଥ ନିର୍ମିତ ହୁଏ । ଆପଲାଚିଅନ୍-କୋଇଲା କ୍ଷେତ୍ରରୁ ବେଶି କୋଇଲା, ତୈଳ ଓ ବାଷ୍ପ ବାହାରେ ଏବଂ ସୁପିରିଅର-ହ୍ରଦ-ପ୍ରଦେଶରୁ ମୃତ୍ତିକାଯୁକ୍ତ ଧାତୁ (ore) ଆସେ । ଏହି ହ୍ରଦ-ତୀରବର୍ତ୍ତୀ Buffalo, Clevelaw ଓ Erie ରେ ମଧ୍ୟ ଲୁହା, ଇସ୍ପାତ କାରବାର ଚଳେ । ଚିକାଗୋ ହେଉଛି ସର୍ବପ୍ରଧାନ ଇସ୍ପାତ କେନ୍ଦ୍ର । ଏଠାରୁ ଲୁହା ଓ ଇସ୍ପାତ-ଜିନିସ ଗୃହ ଆଡ଼େ ପଠାଇବା ପାଇଁ ଢେର ସୁବିଧା ଅଛି । ଅଳ୍ପ କେତେକ ବର୍ଷ ହେଲା, ଆପଲାଚିଅନ୍ ପର୍ବତମାଳା ଲୁହା ଓ ଇସ୍ପାତ ବ୍ୟବସାୟରେ ଖ୍ୟାତି ଲାଭ କରିଅଛି । ଉତ୍ତର-ଆଲବାମାର Birmingham ଏ ବ୍ୟବସାୟର ପ୍ରଧାନ କେନ୍ଦ୍ର ।

ଦକ୍ଷିଣରାଜ୍ୟ ସମୂହରେ ଅତ୍ୟଧିକ ପରିମାଣରେ ଗହମ ଜାତ ହୁଏ । ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳରେ ବି ଏ ବ୍ୟବସାୟ ଢେର ଚଳେ । ପ୍ରାୟ ½ ଗହମ ରପ୍ତାନି କରାଯାଏ—ଅବଶିଷ୍ଟ New Englandକୁ ପଠାଯାଏ । ମାସାଚୁସେଟ୍ସର ଅନେକ ନଗର କପା-କାରବାର ନିମନ୍ତେ ପ୍ରସିଦ୍ଧ । ଦକ୍ଷିଣ ଆପଲାଚିଅନ୍-ଜାତ ଖଣିଜଦ୍ରବ୍ୟ ଏ ଦେଶର କପା-

ବ୍ୟବସାୟରେ ବେଶି ସହାୟତା କରେ । ଏଠାର ଜଳବାୟୁ ଆର୍ଦ୍ର ଏବଂ ଏଠାରେ ସମସ୍ତ ଆବଶ୍ୟକୀୟ ଜିନିଷ ମିଳେ । New England ଓ ଆପଲାଚିଅନ୍-କୋଇଲାକ୍ଷେତ୍ରର ଉତ୍ତର ଭାଗରେ ଲୋମ ଓ ଚର୍ମରେ ନାନା ପ୍ରକାର ଜିନିଷ ତିଆରି ହୁଏ । ଫିଲେଡ଼େଲ୍‌ଫିଆ, ନ୍ୟୁ ୟର୍କ, ନ୍ୟୁଆର୍କ ଓ ବୋଷ୍ଟନ୍ ଏ ବ୍ୟବସାୟର କେନ୍ଦ୍ର । ଏ ସମସ୍ତ ନଗରରେ ପ୍ରୟୋଜନୀୟ ପଦାର୍ଥସବୁ ସୁବିଧାରେ ମିଳେ । ଏଠାରେ ଅନେକ ଲୋକ ବାସ କରନ୍ତି, ବେଶି ବଜାର ଦେଖାଯାଏ ।

ବାଣିଜ୍ୟ:—

ଯୁକ୍ତରାଜ୍ୟରେ ବହୁତ ଶସ୍ୟ ଓ ଖଣିଜପଦାର୍ଥ ଜାତ ହୁଏ । ଏଣୁ ଏଠାର ବାଣିଜ୍ୟ ବ୍ୟବସାୟର ପରିମାଣ ଖୁବ୍ ଅଧିକ । ଆଗେ ବୋଷ୍ଟନ୍ ବନ୍ଦର ବାଣିଜ୍ୟପ୍ରଧାନ ସ୍ଥଳ ଥିଲା; କିନ୍ତୁ ନ୍ୟୁ ଇଂଲଣ୍ଡର ପର୍ବତଶ୍ରେଣୀ ପ୍ରତିବନ୍ଧକ ଯୋଗେ ବୋଷ୍ଟନ୍ ଓ ଯୁକ୍ତରାଜ୍ୟର ମଧ୍ୟଭାଗରେ ଗମନାଗମନ କରିବା ଅତି ଅସୁବିଧାଜନକ । ଆଜିକାଲି ବାଣିଜ୍ୟକ୍ଷେତ୍ରରେ ନ୍ୟୁ ୟର୍କ ବୋଷ୍ଟନର ସ୍ଥାନ ଅଧିକାର କରିଅଛି । ନ୍ୟୁୟର୍କର ପୃଷ୍ଠଭାଗରେ ହଡ଼ସନ୍-ମୋହାକ୍-ନିମ୍ନଭୂମି । ଏ ନିମ୍ନଭୂମିରେ ଆଟଲାଣ୍ଟିକଠାରୁ ବୃହତ୍ ହ୍ରଦମାଳାକୁ ଓ ମହାଦେଶର ମଧ୍ୟଭାଗକୁ ଯିବା ବେଶ୍ ସୁବିଧାଜନକ । ଏରିକେନାଲ ଖୋଳାହେବା ଦିନୁ ହ୍ରଦପୁଞ୍ଜ ଓ ଆଟଲାଣ୍ଟିକ୍ ମଧ୍ୟରେ ଅନେକ ଜାହାଜ ଯାତାୟାତ କରୁଅଛି । ଫଳରେ ନ୍ୟୁ ୟର୍କ ଉତ୍ତର ଆମେରିକାର ବୃହତ୍ତମ ନଗର ହୋଇ ଉଠିଅଛି । ଏଠାରେ ୬୦ଲକ୍ଷ ଲୋକ ଅଛନ୍ତି । ଉପକୂଳପ୍ରଦେଶର ଅତିଜନବହୁଳ ଭାଗର କେନ୍ଦ୍ରରେ ନ୍ୟୁୟର୍କ ଅବସ୍ଥିତ । ଏହା ରେଳମାର୍ଗ ଓ କେନାଲ ଦ୍ୱାରା ଉତ୍ତର-ପଶ୍ଚିମ, ପଶ୍ଚିମ ଓ ଦକ୍ଷିଣ ଅଞ୍ଚଳ ସହିତ ସଂଯୁକ୍ତ । ସୁତରାଂ ଏ ନଗରଟି ଯୁକ୍ତରାଜ୍ୟର ବାଣିଜ୍ୟ-ରାଜଧାନୀ ହୋଇ ପାରିଅଛି । ବୃହତ୍ ହ୍ରଦମାଳାରେ ଅନେକ ଜାହାଜ ସହଜରେ ଯିବା ଆସିବା କରି ପାରେ,

ଯାହାର ଢେର ସୁବିଧା ହୁଏ, ବେଶି ବାଣିଜ୍ୟ କାରବାର ଚଳେ । ଏଣୁ ହ୍ରଦସବୁ ବନ୍ଦରପୂର୍ଣ୍ଣ । ହ୍ରଦ-ବନ୍ଦରମାନଙ୍କ ମଧ୍ୟରେ ଚିକାଗୋ ସର୍ବ-ପ୍ରଧାନ । ଏ ନଗରର ଲୋକ ସଂଖ୍ୟା ୨୨ ଲକ୍ଷ । ମିଚିଗାନ୍ ହ୍ରଦର ପ୍ରାନ୍ତ ଭାଗରେ ଏହାର ସ୍ଥିତି । ଅତଏବ ଏହା ଗୋଟିଏ ପ୍ରଧାନ ବନ୍ଦର, ବୃହତ୍ ରେଲମାର୍ଗ-କେନ୍ଦ୍ର । ନାନା ଦିଗର ରେଲପଥ ଏଠାରେ ଆସି ମିଳିତ ହୋଇଅଛି ।

କେନ୍ଦ୍ରିକ ସମତଳ ଓ ମେକ୍ସିକୋ ଉପସାଗର ମଧ୍ୟରେ ପ୍ରଧାନ ଓ ବୃହତ୍ ଜଳମାର୍ଗ ହୋଇଅଛି ମିସିସିପି । ଏହା ଅନେକ କେନାଲ ଦ୍ୱାରା ବୃହତ୍ ହ୍ରଦମାଳା ସଙ୍ଗେ ସଂଯୁକ୍ତ । ନଦୀ-ଯାତ୍ରା ରେଲଯାତ୍ରା ପରି ସେତେ ପ୍ରଧାନ ନୁହେ । St. Louis ଆଜି କାଲି ଗୋଟିଏ ପ୍ରଧାନ ରେଲ-କେନ୍ଦ୍ର ହୋଇ ପାରିଅଛି । ରେଲମାର୍ଗର ଅନ୍ୟାନ୍ୟ କେନ୍ଦ୍ର:— Cincinnati, Columbus ଓ Indianapolis, ସାନ୍ ଫ୍ରାନ୍ସି-ସ୍କୋ ଫଳବନ୍ତ କାଲିଫର୍ଣିଆ-ନିମ୍ନଭୂମିର ପ୍ରାକୃତିକ ପ୍ରବେଶଦ୍ୱାର-କେନ୍ଦ୍ରିକ-ମଧ୍ୟମହାଦେଶୀୟ ରେଲମାର୍ଗର ପ୍ରାନ୍ତ । ଏ ରେଳପଥଟି ଚିକାଗୋ ଓ ସେଇଣ୍ଟ୍ ଲୁଇ ମଧ୍ୟରେ ଗ୍ଭଲିଅଛି । ଯୁକ୍ତରାଜ୍ୟରେ ତିନି ଗ୍ଭରି ଗୋଟି ପ୍ରଧାନ ରେଲମାର୍ଗ ତିଆରି ହୋଇଅଛି । ୯ ସମସ୍ତ ରେଲପଥର ଶାଖା ଅନେକ । ରେଲମାର୍ଗ ସବୁ ମେକ୍ସିକୋ-ରେଲପଥ ସହିତ ମିଶିଅଛି । ଚିକାଗୋ, ନ୍ୟୁୟର୍କ, ଫିଲେଡେଲ୍‌ଫିଆ, ନ୍ୟୁ ଅର୍ଲିନ୍ସ, ଓ ସାନ୍ ଫ୍ରାନ୍ସିସ୍କୋ— ଏହି ସମସ୍ତ ରେଳସଡ଼କର ପ୍ରଧାନ ମିଳନ ସ୍ଥଳ ।

ପ୍ରଶ୍ନ:— ଯୁକ୍ତରାଜ୍ୟର ସକଳ ପ୍ରାକୃତିକ ବିଭାଗର ସୀମା ନିର୍ଦ୍ଦେଶ କର ।

ଯୁକ୍ତରାଜ୍ୟର ଲୋକେ କି କି ବ୍ୟବସାୟ କରନ୍ତି ?

ଏ ଦେଶର ପ୍ରାଧାନ୍ୟର କାରଣ କଣ ?

# ( D ) ମଧ୍ୟ-ଆମେରିକା

ଟେହୁଆନ୍‌ଟେପେକ୍ ଓ ପାନାମା ସଂଯୋଜକ ମଧ୍ୟବର୍ତ୍ତୀ ଭୂଖଣ୍ଡକୁ 'ମଧ୍ୟ-ଆମେରିକା' (Central America) କହାଯାଏ । ଦେଶଟି ଗୋଟିଏ ଦୀର୍ଘ ସଂଯୋଜକ (isthmus) କହିଲେ ଚଳେ । ଏହାର ଉତ୍ତର ଭାଗ ବିସ୍ତୃତ, ଦକ୍ଷିଣ ଭାଗଟି ସଙ୍କୀର୍ଣ୍ଣ । ପାନାମା ସଂଯୋଜକ ନିକଟରେ ଦେଶଟି ୩୦ମାଇଲ ମାତ୍ର ଓସାର । ଏହା ଏକ ମାଳଭୂମି—ନିମ୍ନୋପକୂଳ ଦ୍ୱାରା ବେଷ୍ଟିତ । ଏହାର ପୂର୍ବୋପକୂଳଟି ଖୁବ୍ ନିମ୍ନ, ସଙ୍କୀର୍ଣ୍ଣ । ପଶ୍ଚିମୋପକୂଳ ପାର୍ବତ୍ୟ, ଉନ୍ନତ ଓ ଗଭୀର ପୋତାଶ୍ରୟପୂର୍ଣ୍ଣ । ମଧ୍ୟ-ଆମେରିକା ପର୍ବତରେ ପୂର୍ଣ୍ଣ । ଉତ୍ତର ବା ବିସ୍ତୃତ ଭାଗରେ ଖୁବ୍ ଉଚ୍ଚ ପର୍ବତ ଏବଂ ପ୍ରଶାନ୍ତୋପକୂଳରେ ଦୀର୍ଘ, ଉଚ୍ଚ ଅଗ୍ନେୟଗିରିମାଳା ଦେଖାଯାଏ । ଏଠାର ଅଗ୍ନେୟଗିରିସବୁ କ୍ରିୟାଶୀଳ । ନିକାରାଗୁଆହ୍ରଦ ନିକଟରେ ଗୋଟିଏ ଭୟଙ୍କର ଅଗ୍ନେୟଗିରି ଅଛି । ଏଣୁ ଏଠାରେ ବାରମ୍ବାର ଭୂମିକମ୍ପ ହୋଇଥାଏ ।

ଅଗ୍ନେୟଗିରିନିର୍ଗତ ଭସ୍ମ ବା ପାଉଁଶରେ କେତୋଟି ନିମ୍ନଭୂମି ଆଚ୍ଛାଦିତ—କେତେକ ପାଉଁଶ ନଦୀରେ ଧୋଇ ହୋଇ ଉପକୂଳ-ସମତଳରେ ଯାଇ ପଡ଼େ । ଏହା ଛଡ଼ା, ନଦୀରେ ପର୍ବତରୁ ଭୂମି-ସାର ମଧ୍ୟ ଆସିଥାଏ । ଏଣୁ ଏ ସମସ୍ତ ଅଞ୍ଚଳ ଖୁବ୍ ଫଳବନ୍ତ । ମଧ୍ୟ-ଆମେରିକା ଗ୍ରୀଷ୍ମ-ମଣ୍ଡଳରେ ଅବସ୍ଥିତ । ଏହାର ମଧ୍ୟ ଭାଗ ଖୁବ୍ ଶୁଷ୍କ । ନିମ୍ନୋପକୂଳ ପ୍ରଦେଶ ଗରମ; କିନ୍ତୁ ଉଚ୍ଚତମ ଢାଲୁ ପ୍ରଦେଶସବୁ ଅପେକ୍ଷାକୃତ ଶୀତଳ ।

ମଧ୍ୟ ଆମେରିକାରେ କମ୍ ଲୋକ ବାସ କରନ୍ତି । ଏହା ନିମ୍ନଲିଖିତ ସ୍ୱତନ୍ତ୍ର (ପ୍ରଜା-ଶାସିତ) ରାଜ୍ୟରେ ବିଭକ୍ତ:— ୧ Guetemala ୨ Salvador ୩ Honduras—Federated states. ୪ Nicaragua ୫ Costa Rica ୬ Panama ଓ ୭ Crown Colony of British Honduras

ପାନାମା କେନାଲ:— ପାନାମାରାଜ୍ୟରେ ଏହି ବୃହତ୍ ଜାହାଜ-କେନାଲ ପୃଥିବୀର ଦୁଇଟି ସର୍ବପ୍ରଧାନ ମହାସାଗରକୁ ମିଶାଇଅଛି । ଏହା ଆଟ୍‌ଲାଣ୍ଟିକ୍ ଉପକୂଳର କୋଲନ୍ ଠାରୁ ପ୍ରଶାନ୍ତୋପକୂଳର ପାନାମା ପର୍ଯ୍ୟନ୍ତ ବିସ୍ତୃତ । କେନାଲଟି ପ୍ରାୟ ୫୦ ମାଇଲ ଲମ୍ବା— ସୁଏଜ୍ କେନାଲର ଦୈର୍ଘ୍ୟର ପ୍ରାୟ ଅର୍ଦ୍ଧେ । ଏହା କିନ୍ତୁ ସମତଳ, ବାଲୁକାମୟ ସଂଯୋଜକରେ ଖୋଳା ଯାଇ ନାହିଁ— ପାର୍ବତ୍ୟ, ଅସମାନ ଭୂମିରେ ଖୋଳା ହୋଇ ଅଛି । ଏଣୁ ଜାହାଜମାନ କେନାଲ-କବାଟ-କଳ (lock) ମଧ୍ୟରେ ଯା ଆସ କରେ । ଏଠାର ଉଚ୍ଚତମ କବାଟ-କଳଟି ସମୁଦ୍ରତଳରୁ ୮୫ ଫୁଟ ଉଚ୍ଚ । ସୁଏଜ୍ କେନାଲରେ ପ୍ରତି ସପ୍ତାହ ୧୦୦ ଗୋଟି ଜାହାଜ ଯାଏ, କିନ୍ତୁ ପାନାମା କେନାଲ ବାଟେ ପ୍ରତି ସପ୍ତାହ ପ୍ରାୟ ୧୦ ଗୋଟି ଜାହାଜ ଯାତାୟାତ କରିଥାଏ । ଏହି କେନାଲ ଯୋଗେ ଉଭୟ ଆମେରିକାର ପ୍ରଶାନ୍ତ ଓ ଆଟ୍‌ଲାଣ୍ଟିକ୍ ମହାସାଗରୋପକୂଳବର୍ତ୍ତୀ ଅନେକ ବନ୍ଦର ମଧ୍ୟରେ ଅତ୍ୟଳ୍ପ ସମୟ ମଧ୍ୟରେ ଯାତ୍ରା କରିବାର ବେଶ୍ ସୁବିଧା ହୋଇଥାଏ । ଏହା ଯୋଗେ ଉତ୍ତର ଆମେରିକାର ଆଟ୍‌ଲାଣ୍ଟିକୋପକୂଳ ଓ ଉଭୟ ଆମେରିକାର ପ୍ରଶାନ୍ତୋପକୂଳ ମଧ୍ୟରେ ବିସ୍ତର ବାଣିଜ୍ୟ ଚଳେ । ଏ କେନାଲବାଟେ ଯୁକ୍ତରାଜ୍ୟର ସକଳ ରଣପୋତ, ଯାବତୀୟ ଜାହାଜ ଉଭୟ ମହାସାଗରକୁ ଚାଲି ଯାଏ । ପାନାମା କେନାଲ ଯୁକ୍ତରାଜ୍ୟ-ସରକାର ଦ୍ୱାରା ନିର୍ମିତ । ୧୯୧୫ ସାଲରେ କେନାଲ କାମ ଶେଷ ହୋଇ ଥିଲା ।

West Indies (ପାଶ୍ଚାତ୍ୟ ଦ୍ୱୀପ):—

ଏହି ଦ୍ୱୀପପୁଞ୍ଜ ମଧ୍ୟ-ଆମେରିକାର ପୂର୍ବ ଭାଗରେ ଆଟ୍‌ଲାଣ୍ଟିକ ମହାସାଗରରେ ଅବସ୍ଥିତ । ଏହା ଆଟ୍‌ଲାଣ୍ଟିକ୍ ଭିତରକୁ ଗୋଟିଏ ଧନୁ ଭଳି ବକ୍ରି ଅଛି । ଏକ ପୋତାଶ୍ରୟ ବନ୍ଧ (break-water) ପରି କାରିବିଅନ୍ ସାଗରକୁ ଘେରି ରହିଅଛି ଏବଂ ଗୋଟିଏ ଭଗ୍ନ ପୋଲ ପରି ଉତ୍ତର,

ମଧ୍ୟ ଓ ଦକ୍ଷିଣ ଅମେରିକାକୁ ପରସ୍ପର ସହିତ ସଂଯୁକ୍ତ କରିଅଛି । ଏହାର ନାମ କାହିଁକି "West Indies" ରଖାଯାଇଛି, ତାହା ଆଗେ ପଢ଼ି ସାରିଛ । ଏଠାର ପ୍ରତ୍ୟେକ ଦ୍ୱୀପର ଆକୃତି ଓ ଗଠନରେ ପ୍ରଭେଦ ଦେଖାଯାଏ । କ୍ୟୁବା ସିଂହଳଠାରୁ ବଡ଼—ଅନ୍ୟାନ୍ୟ ପ୍ରାୟ ସମସ୍ତ ଦ୍ୱୀପ ଅତି ଛୋଟ । ଏ ଦ୍ୱୀପମାଳା ଗ୍ରୀଷ୍ମମଣ୍ଡଳ ମଧ୍ୟରେ କମ୍ବା କିଛି ବାହାରେ ଥିବାରୁ ଏଠାର ଜଳବାୟୁ ଓ ଉଦ୍ଭିଦ ଠିକ୍ ସିଂହଳର ଜଳବାୟୁ, ଉଦ୍ଭିଦ ଭଳି । ଏଠାରେ ବେଶି ବର୍ଷା ହୁଏ । ପ୍ରଧାନତଃ ଆଟଲାଣ୍ଟିକ୍‌ରୁ ବୃଷ୍ଟି ଆସିଥାଏ । ଏ ଦ୍ୱୀପପୁଞ୍ଜରେ ବାରମ୍ବାର ତୋଫାନ ଉଠିଥାଏ, ଫଳରେ ଶସ୍ୟ ନଷ୍ଟ ହୁଏ, ସମୁଦ୍ରରେ ଜାହାଜ ବୁଡ଼ିଯାଏ, ଘରଦ୍ୱାର ଗଛ ଇତ୍ୟାଦି ଭାଙ୍ଗି ପଡ଼େ ।

ପ୍ରଚଣ୍ଡ ସୂର୍ଯ୍ୟକିରଣ, ଉତ୍ତମ ବୃଷ୍ଟି ଓ ଆଗ୍ନେୟଗିରି-ସାର ଯୋଗେ ଏ ଦ୍ୱୀପସବୁ ଅତ୍ୟନ୍ତ ଫଳବତୀ ହୋଇଅଛି । ସିଂହଳ ଓ ମାଲବାର-ଉପକୂଳରେ ଯେପରି ବୃକ୍ଷଲତା ଜନ୍ମେ, ଏଠାରେ ବି ସେପରି ହୋଇଥାଏ ; ନିମ୍ନଭାଗ ପ୍ରଦେଶସବୁ ନଡ଼ିଆଗଛରେ ପୂର୍ଣ୍ଣ । ଦ୍ୱୀପମଧ୍ୟରେ ଥିବା ପାହାଡ଼ ସବୁ mahoganyବନ ଓ କାଫିଗଛରେ ଆବୃତ । ଏଠାରେ ବେତ ଓ ତମାଖୁ ଜାତ ହୁଏ । ଆଜକୁ ପ୍ରାୟ ଏକ ଶତ ବର୍ଷ ହେଲା ପାଶ୍ଚାତ୍ୟ-ଭାରତଦ୍ୱୀପପୁଞ୍ଜ ୟୁରୋପକୁ ଚିନି ଓ ଗୁଆଁପତ୍ର ଯୋଗାଇ ଆସୁଛି । ଏଠାରୁ ଜାହାଜରେ ୟୁରୋପ ଓ ଯୁକ୍ତରାଜ୍ୟକୁ ବହୁ ପରିମାଣରେ କଦଳୀ, କମଳା, ସପୁରୀପନସ ପଠାଯାଇ ଥାଏ ।

West Indies ତିନି ବିଭାଗରେ ବିଭକ୍ତ:—୧. The Bahamas ୨ The Greater Antilles (Cuba, Haiti, Port ociR ଓ Jamaica) ୩ The Lesser Antilles (ଉତ୍ତରରେ Leward Islands, ଦକ୍ଷିଣରେ Windward Islands). ଛୋଟ ଛୋଟ ଅନେକ ଦ୍ୱୀପ ବାହାମାର ଅନ୍ତର୍ଗତ । ଏ ଦ୍ୱୀପସବୁ ଯୋଡ଼ିଲାରେ

ଗଠିତ । ପୂର୍ବେ କ୍ୟୁବା ଦ୍ୱୀପ ସ୍ପେନ୍‌ର ଅଧୀନ ଥିଲା । ବର୍ତ୍ତମାନ ଏଠାରେ ପ୍ରଜାତନ୍ତ୍ର ଶାସନ ପ୍ରବର୍ତ୍ତିତ । ଏଠାର ଶାସନରେ ଯୁକ୍ତରାଜ୍ୟ-ସରକାରଙ୍କର କର୍ତ୍ତୃତ୍ୱ ଅଂଶ ଅଛି । କ୍ୟୁବାର ରାଜଧାନୀ Havana. ଏ ସହରରେ ବଡ଼ ସୁନ୍ଦର ଚିରୁଟ (cigar) ତିଆରି ହୁଏ । San Domingo ବା ହେଇଟିଦ୍ୱୀପର ଶାସନ ନିଗ୍ରୋମାନଙ୍କ ଦ୍ୱାରା ପରିଚାଳିତ । ପୋର୍ଟରିକୋ ଯୁକ୍ତରାଜ୍ୟାଧୀନ । ଜାମେଇକା ଗୋଟିଏ ଶ୍ରେଷ୍ଠ ଦ୍ୱୀପ କହିଲେ ଚଳେ, ଏହାର ରାଜଧାନୀ ଓ ପ୍ରଧାନ ବନ୍ଦର Kingston

ପ୍ରଶ୍ନ:— ପାନାମା କେନାଲର ଉପଯୋଗିତା ବର୍ଣ୍ଣନ କର ।

WestIndiesର ଜଳବାୟୁ ଓ ଉଦ୍ଭିଦଜାତସମ୍ବନ୍ଧରେ କଣ ଜାଣ ?

ଏହି ଦ୍ୱୀପପୁଞ୍ଜକୁ 'West Indies'କହନ୍ତି କାହିଁକି ?

---

## (E) ଦକ୍ଷିଣ ଆମେରିକା

ଆମେଜାନ୍‌ନଦୀ ଓ ତନ୍ନିକଟବର୍ତ୍ତୀ ଅରଣ୍ୟପ୍ରଦେଶ ସମ୍ବନ୍ଧରେ ଆଗେ ଯଥେଷ୍ଟ କହାଯାଇଅଛି । ଏହି ପରିଚ୍ଛେଦରେ ଦକ୍ଷିଣ ଆମେରିକାର ବ୍ରେଜିଲ୍ ଓ ଆର୍ଜେଣ୍ଟିନା ଦେଶର ବିଷୟ ବର୍ଣ୍ଣିତ ହେବ ।

ଦକ୍ଷିଣ ଆମେରିକାର ରାଜନୈତିକ ବିଭାଗସକଳ:—୧ ବ୍ରେଜିଲ୍ —ରାଜଧାନୀ Rio de Janeiro. ୨ ଆର୍‌ଜେନ୍‌ଟିନା—ରାଜଧାନୀ Buenos Aires. ୩ ଚିଲି ୪ ବୋଲିଭିଆ ୫ ଉରୁଗୁଏ ୬ ପାରାଗୁଏ ୭ ପେରୁ ୮ ଇକ୍ୟୁଏଡ଼ର୍ ୯ କୋଲମ୍ବିଆ ୧୦ ଭେନେଜୁଏଲା ୧୧ ବ୍ରିଟିଷ୍ ଗିଆନା ।

ବ୍ରେଜିଲ୍:—

ଦକ୍ଷିଣ ଆମେରିକାର ପ୍ରାୟ ଏକ ଅର୍ଦ୍ଧାଂଶ ବ୍ରେଜିଲ୍ । ଏ ଦେଶଟି ଭାରତଠାରୁ ପ୍ରାୟ ଦୁଇ ଗୁଣ ବଡ଼ ହୋଇପାରେ । ବ୍ରେଜିଲ୍‌ର ଅଧିକାଂଶ

ନିମ୍ନ ଓ ସମତଳ ଅମେଜାନ୍-ଅବବାହିକାରେ ଆବୃତ ଏଠାର ଅରଣ୍ୟବାସିମାନେ ରବର୍, ବାଦାମ, ଗୁଆ, ନଡ଼ିଆ ନା ଫଳ ସଂଗ୍ରହ କରି ନଦୀମାର୍ଗରେ Manaos ଓ ଅନ୍ୟାନ୍ୟ ବନ୍ଦରକୁ ପଠାନ୍ତି । ଏ ସମସ୍ତ ବନ୍ଦରରୁ ଏ ପଦାର୍ଥ ସବୁ ଷ୍ଟୀମାରରେ ବିଦେଶକୁ ପଠାଯାଏ । ବ୍ରେଜିଲ୍-ମାଳଭୂମିକୁ ପର୍ବତପୃଷ୍ଠ—ଏହା ଭାରତ ଦକ୍ଷିଣାତ୍ୟ ମାଳଭୂମି ଅପେକ୍ଷା ବୃହତ୍ତର, ଉଚ୍ଚତର । ଏ ମାଳଭୂମିରେ ଅନେକ ଗଭୀର, ଦୀର୍ଘ ନଦୀ-ନିମ୍ନଭୂମି ଦେଖାଯାଏ । ଏଠାରେ ମକା, କପା, ଚିନି ଓ ତମାଖୁ ଆବାଦ କରାଯାଏ ଏବଂ ଗାଈଗୋରୁ ଓ ମେଣ୍ଢା ପାଳିତ ହୁଅନ୍ତି । ଏ ପଶୁମାନଙ୍କ ଚର୍ମ ଓ ଲୋମରେ ଢେର କାରବାର ଚାଲେ । ବ୍ରେଜିଲ୍‌ର ଦକ୍ଷିଣାଞ୍ଚଳ ଖୁବ୍ ଥଣ୍ଡା । ଉପକୂଳ ନିକଟସ୍ଥ ଉଚ୍ଚଭୂମିରେ ପ୍ରଚୁର କାଫି ଫସଲ ହୁଏ । ଜଗତରେ ବ୍ୟବହୃତ ସମସ୍ତ କାଫିର ⅔ ବ୍ରେଜିଲ୍‌ରେ ଉତ୍ପନ୍ନ କରାଯାଏ । ଏ ସମସ୍ତ କାଫି Santos ଓ Rio de Janeiro ବନ୍ଦରଠାରୁ ବିଦେଶକୁ ପ୍ରେରିତ ହୁଏ । ବ୍ରେଜିଲ୍‌ର ପ୍ରଧାନ ସହରସବୁ ସାଗର-ବନ୍ଦର କିମ୍ବା ନଦୀ-ବନ୍ଦର । ଏ ଦେଶର ମଧ୍ୟଭାଗରେ ଅଳ୍ପ ଲୋକ ବାସ କରନ୍ତି— ଏଠାର କମ୍ ଭାଗମାତ୍ର ଆବିଷ୍କୃତ ହୋଇଅଛି ।

ଆର୍ଜେଣ୍ଟିନା:—

ପ୍ରଶାନ୍ତ ମହାସାଗରର ପଶ୍ଚିମପବନ ଆଣ୍ଡିଜ୍‌କୁ ଡେଇଁ ଉପରେ ବୃଷ୍ଟି ବୋହି ନେଇ ପାରେ ନାହିଁ । ଏଣୁ ଏ ଦେଶର ପଶ୍ଚିମାଞ୍ଚଳକୁ ପର୍ବତପ୍ରାନ୍ତର ଓ ମରୁଭୂମିରେ ଅଛନ୍ତି । କିନ୍ତୁ ବର୍ଷାଯୋଗେ ପୂର୍ବାଞ୍ଚଳକୁ ଫଳବତୀ । ଏହି ଭାଗରେ ଅନେକ ତୃଣଭୂମି ଓ କୃଷିଯୋଗ୍ୟ କ୍ଷେତ୍ର ଦେଖାଯାଏ । ଏଠା pampas ରେ ଚାଷ ହୁଏ । ଏଠାର ତୃଣଭୂମିରେ ହଜାର ହଜାର ଗାଈ ଗୋରୁ, ମେଣ୍ଢା ଓ ଘୋଡ଼ା ଚରନ୍ତି । ଏ ଦେଶକୁ ଗୋପାଳନ ଓ ଅଶ୍ୱପାଳନ (ranching) ନିମନ୍ତେ ପ୍ରସିଦ୍ଧ । ଆର୍ଜେଣ୍ଟିନା, ଉରୁଗୁଏ

ଉ. ମାର୍ଗ୍ୱେ ଦକ୍ଷିଣ ଆମେରିକାର ଅଭ୍ୟୁଲକ୍ଷ୍ମୀ କୃଷିପ୍ରଧାନ ଦେଶ । ଏ ଦୁଇ ଦେଶରେ ପ୍ରଚୁର ବୃଷ୍ଟି ହୁଏ । ଅନେକ ଦୀର୍ଘ ଓ ନାବ୍ୟ ନଦୀ ଏବଂ ରେଳମାର୍ଗ ଦେଖାଯାଏ । ଏଠାର ଭୂମି ସମତଳ, ଉର୍ବର । ଗହମ ଫସଲ ପାଇଁ ଅର୍ଜେଣ୍ଟିନା ପ୍ରସିଦ୍ଧ । ଏ ଦେଶ ସକଳ ୟୁରୋପୀୟ ଦେଶକୁ ବେଶି ଗହମ, ମଇଦା ଯୋଗାଏ । ଏଠା ଲୋକେ ରେଳପଥ ଓ ନଦୀରେ ସମୁଦ୍ର-ବନ୍ଦରକୁ ଗହମ ଓ ଗୋରୁ ପଠାନ୍ତି । Buenos Aires ଦ: ଆମେରିକାର ସର୍ବପ୍ରଧାନ ନଗର ଓ ସାଗର-ବନ୍ଦର । ଏହାକୁ "ଦକ୍ଷିଣ ଆମେରିକାର କଲିକତା" ଆଖ୍ୟା ଦିଆ ଯାଇଅଛି । ଏହାର ପୃଷ୍ଠ ଭାଗରେ ବୃହତ୍ତମ, ଅତିଫଳବତୀ ଏକ ସମତଳ ଅବସ୍ଥିତ । ରେଳ ଓ ନଦୀମାର୍ଗରେ ଦେଶର ମଧ୍ୟଭାଗ ସହିତ ଏହି ସହରର ଢେର ବାଣିଜ୍ୟ ଚଳୁଅଛି ।

ଦକ୍ଷିଣ ଆମେରିକା ଗୋଟିଏ ଫଳବତୀ ମହାଦେଶ । ଅଥଚ ଏହା ଅନ୍ୟାନ୍ୟ ମହାଦେଶର ପଛରେ ପଡ଼ିଅଛି । କାରଣ, ଏହାର ଅଧିକାଂଶ ବର୍ତ୍ତମାନ ସୁଦ୍ଧା ଅନାବିଷ୍କୃତ । ୟୁରୋପୀୟ ଔପନିବେଶିକମାନଙ୍କ ଛଡ଼ା, ଅନ୍ୟାନ୍ୟ ଅଧିବାସିଗଣ ଅଳ୍ପଶିକ୍ଷିତ ମାତ୍ର । ଫଳବତୀ ହେଲେହେଁ, ଏ ମହାଦେଶର ଆକୃତି ଅନୁପାତରେ ବେଶି ଅଧିବାସୀ ଦେଖାଯାନ୍ତି ନାହିଁ । ଦ: ଆମେରିକାର ବଣେଇଚଷ ବନ, ପର୍ବତ, ଗୋଚରଭୂମି ଓ ଖଣିରୁ ଉତ୍ପନ୍ନ ହେବା ଦ୍ରବ୍ୟ ବିଦେଶକୁ ରପ୍ତାନୀ ହୁଏ । ଏ ମହାଦେଶରେ ଅଳ୍ପ ଜିନିସ ମାତ୍ର ତିଆରି କରାଯାଏ । ପ୍ରାୟ ସମସ୍ତ ପ୍ରସ୍ତୁତ ପଦାର୍ଥ ଅନ୍ୟାନ୍ୟ ମହାଦେଶରୁ ଆମଦାନୀ କରାହୋଇଥାଏ । କଲିକତାର ଅଖାମୁଣା ଏଠାକୁ ଯାଏ । ଏଠାର ସମୁଦ୍ର-ବନ୍ଦର ଓ ନଦୀ-ବନ୍ଦରହିଁ ପ୍ରଧାନ ସହର ରୂପେ ପରିଗଣିତ ।

ପ୍ରଶ୍ନ:— ବ୍ରେଜିଲ ଓ ଅର୍ଜେଣ୍ଟିନାରେ କ କ କାରବାର ଚଳେ ?

ଫଳବତୀ ହେଲେହେଁ ଦକ୍ଷିଣ ଆମେରିକାରେ କମ୍ ଲୋକ ବାସ କରନ୍ତି କାହିଁକି ?

ତୃତୀୟ ଭାଗ

# ଅଷ୍ଟ୍ରେଲିଆ

## ୧ ଅବସ୍ଥିତି ଓ ଆବିଷ୍କାର

'ଅଷ୍ଟ୍ରେଲିଅ'ର ଅର୍ଥ 'ଦକ୍ଷିଣଭୂମିଖଣ୍ଡ'। ୟୁରୋପୀୟ ଅଧିବାସୀମାନେ ଏ ମହାଦେଶକୁ ଏହି ନାମ ଦେଇଥିଲେ। ଏହା ଏକ ପ୍ରକାଣ୍ଡ ଦ୍ୱୀପ— ଭାରତ ଓ ବର୍ମା ମିଶାଇଲେ ଯେତେ ହେବ, ଏହା ତାହାଠାରୁ ବି ବଡ଼ ହୋଇପାରେ। ବିଶାଳ ଆୟତନ ଯୋଗେ ଏହାକୁ 'ମହାଦେଶ' କହନ୍ତି। ଭାରତ ବିଷୁବରେଖାର ଉତ୍ତରରେ ଯେଉଁ ଲଘିମାରେ ଦେଖାଯାଏ, ଏହି ଦ୍ୱୀପ-ମହାଦେଶ (island-continent) ବିଷୁବରେଖାର ଦକ୍ଷିଣରେ ପ୍ରାୟ ସେହି ଲଘିମାରେ ଅବସ୍ଥିତ। ଏହା ଲଘିମା ୧୦ ଡିଗ୍ରୀ ଓ ୪୦ ଡିଗ୍ରୀ ଏବଂ ଦ୍ରାଘିମା ପ୍ରାୟ ୧୧୫ ଡିଗ୍ରୀ ଓ ୧୫୦ ଡିଗ୍ରୀ ମଧ୍ୟରେ ପ୍ରସାରିତ। ଏହା ବଡ଼ ହେଲେ ମଧ୍ୟ ପାଞ୍ଚ ମହାଦେଶ ମଧ୍ୟରେ କ୍ଷୁଦ୍ରତମ। ଆଫ୍ରିକା ଓ ଦକ୍ଷିଣ ଆମେରିକା ଭଳି ଏହା ଗୋଟିଏ ସ୍ୱତନ୍ତ୍ର ଭୂମିଭାଗ। ଏହା ମହାସାଗର-ଗୋଲାର୍ଦ୍ଧରେ (ocean-hemisphere) ବିସ୍ତୃତ— ଅନ୍ୟାନ୍ୟ ମହାଦେଶଠାରୁ ବିଚ୍ଛିନ୍ନ ହୋଇଅଛି। ଅଷ୍ଟ୍ରେଲିଅ ସାଧାରଣ ଜାହାଜ ମାର୍ଗର ବାହାରେ ଅଛି କହିଲେ ଚଳେ। Torres ଓ Bass ପ୍ରଣାଳୀର ଅଗଭୀର ଜଳଦ୍ୱାରା ଏ ମହାଦେଶ ଯଥାକ୍ରମେ ନ୍ୟୁଗିନି ଓ ଟାସ୍‌ମେନିଆ ଠାରୁ ପୃଥକ୍ ହୋଇଅଛି। ଏହାର ପ୍ରାୟ ମଧ୍ୟଭାଗରେ ମକର ଅୟନାନ୍ତ ବୃତ୍ତ (Tropic of Capricorn) ଯାଇଅଛି। ପଶ୍ଚିମରୁ ପୂର୍ବ ଯାଏଁ ଏ ମହାଦେଶର ବୃହତ୍ତମ ବିସ୍ତାର ଦେଖାଯାଏ। ମହାଦେଶଟି ବିଷୁବରେଖା-ମଣ୍ଡଳରେ ପ୍ରବେଶ କରି ନାହିଁ। ଗୋଟିଏ ବିଶାଳ, ବିସ୍ତୃତ ମହାସାଗର ଏହାକୁ ଦକ୍ଷିଣ-ମେରୁ-ମଣ୍ଡଳ (Antarctic regions) ଠାରୁ ପୃଥକ୍ କରିଅଛି। ଅଷ୍ଟ୍ରେଲିଆର ପୂର୍ବ ଦିଗରେ

ଦ୍ୱୀପପୁଞ୍ଜ ପ୍ରଶାନ୍ତ ମହାସାଗର ଏବଂ ପଶ୍ଚିମରେ ଭାରତ ମହାସାଗର ପ୍ରସାରିତ। ଦକ୍ଷିଣ-ପୂର୍ବ-ଏସିଆ ଓ ଅଷ୍ଟ୍ରେଲିଆ ମଧ୍ୟରେ ଅନେକ ଦ୍ୱୀପ (ପୂର୍ବ-ଭାରତୀୟ-ଦ୍ୱୀପପୁଞ୍ଜ) ଦେଖା ଯାଏ।

ଆବିଷ୍କାର:—

୧୫୩୦ ସାଲ ପୂର୍ବେ ଚିନାଲୋକେହିଁ ଅଷ୍ଟ୍ରେଲିଆ କଥା ଜାଣିଥିଲେ। ସେମାନେ ଏ ମହାଦେଶର ଉତ୍ତରୋପକୂଳରେ ଯାଇ ମାଛ ଧରୁ ଥିଲେ। ୧୫୬୪ରେ ପ୍ରଥମରେ ପୋର୍ତ୍ତୁଗୀଜ୍‌ମାନେ ଏ ମହାଦେଶ ସମ୍ବନ୍ଧରେ ବେଶି କିଛି ଜାଣି ପାରିଲେ। ୧୬୦୬ ସାଲରେ Torres ନାମକ ଜଣେକ ସ୍ପେନ୍-ବାସୀ Torres ପ୍ରଣାଳୀ ମଧ୍ୟରେ ଯାତ୍ରା କରି York ଅନ୍ତରୀପ ଦେଖିଲେ। ତାଙ୍କ ନାମାନୁସାରେ ପ୍ରଣାଳୀଟିର ନାମକରଣ ହୋଇଅଛି "Torres Strait" ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ଜାଣାର ଡଚ୍-ନାବିକମାନେ ( Dutch navigators) ଅଷ୍ଟ୍ରେଲିଆର ଉତ୍ତର ଓ ପଶ୍ଚିମୋପକୂଳ ଆବିଷ୍କାର କଲେ। ୧୬୪୨ ରେ ଡଚ୍ ନାବିକ Tasman ଟାସ୍‌ମେନିଆ ଦ୍ୱୀପ ଆବିଷ୍କାର କଲେ। ତାଙ୍କର ସେତେବେଳେ ଧାରଣା ଥିଲା ଯେ, ଟାସ୍‌ମେନିଆ ଖାସ୍ ଅଷ୍ଟ୍ରେଲିଆ ମହାଦେଶର ଏକ ଅଂଶ। ୧୬୮୮ ରେ Dampier ନାମକ ଜଣେ ଇଂରେଜୀ ଲୋକ ଏହି ଦ୍ୱୀପ-ମହାଦେଶ ପରିଦର୍ଶନ କରି ଗଲେ—ଉତ୍ତର ପଶ୍ଚିମ-ତୀର ଆବିଷ୍କାର କଲେ। ଇଂରେଜୀମାନଙ୍କ ମଧ୍ୟରେ ଏ ଥିଲେ ପ୍ରଥମ ଅଷ୍ଟ୍ରେଲିଆ-ପରିଦର୍ଶକ। ୧୭୭୦ ସାଲ ଯାଏ ଏ ମହାଦେଶରେ କୌଣସି ୟୁରୋପୀୟ ଉପନିବେଶ ସ୍ଥାପିତ ହୋଇ ନ ଥିଲା। ସେଇ ବର୍ଷ Cook ସାହେବ ଅଷ୍ଟ୍ରେଲିଆର ଫଳବତୀ ପୂର୍ବୋପକୂଳର ଅଧିକାଂଶ ପରୀକ୍ଷା କଲେ ଏବଂ ତାଙ୍କର ରିପୋର୍ଟ ଓ ପ୍ରସ୍ତାବରେ ଇଂରେଜୀ ସରକାର ଗୋଟିଏ ଫୌଜଦାରୀ-ଉପନିବେଶ-( penal settlement )-ସ୍ଥାପନ ପାଇଁ

ମହାଦେଶର ପୂର୍ବୋପକୂଳକୁ ପସନ୍ଦ କଲେ । ଏ ଉପନିବେଶକୁ ପ୍ରଥମରେ Botany Bayରେ, ପରେ Port Jackson ପୋତାଶ୍ରୟରେ ପ୍ରତିଷ୍ଠିତ ହେଲା । ଏ ଉପନିବେଶ ଥିଲା ବୃହତ୍ ଅଷ୍ଟ୍ରେଲିଅ-ଉପନିବେଶ ସମୂହର କେନ୍ଦ୍ର । ପୋର୍ଟ ଜ୍ୟାକ୍‌ସନ୍ ପୋତାଶ୍ରୟରେ Sydney ସହର ନିର୍ମିତ ହେଲା । ସ୍ୱତନ୍ତ୍ର New South Wales ଉପନିବେଶ ବିକାଶ ପାଇବାପରେ ସିଡ୍‌ନି ସେଠା ସରକାରର ପ୍ରଧାନ ନଗର ହୋଇ ଉଠିଲା ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଔପନିବେଶିକମାନେ ନୀଳ ପର୍ବତମାଳା (the Blue Mountains) ଉତ୍ତୀର୍ଣ୍ଣ ହୋଇ ଉତ୍ତରାଞ୍ଚଳକୁ ଚାଲିଗଲେ । ପୂର୍ବ ଓ ଦକ୍ଷିଣ-ପୂର୍ବ ଉପକୂଳରେ ଏବଂ ଏହି ଦୁଇ ଅଞ୍ଚଳର ପୃଷ୍ଠଭାଗରେ ଅନେକ ଉପନିବେଶ ଅଳ୍ପେ ଅଳ୍ପେ ସଂସ୍ଥାପିତ ହେବାକୁ ଲାଗିଲା । ୧୮୨୫ ସାଲରେ Brisbane (କ୍ୱିନ୍‌ସ୍‌ଲଣ୍ଡ୍‌ର ଆଧୁନିକ ରାଜଧାନୀ) ପ୍ରତିଷ୍ଠିତ ହେଲା । ଏହାର ଦଶ ବର୍ଷ ପରେ Melbourne ବୃଦ୍ଧି ପାଇ ଭିକ୍ଟୋରିଆର ରାଜଧାନୀ ହେଲା । ସେହି ସମୟରେ Adelaide (ଦକ୍ଷିଣ-ଅଷ୍ଟ୍ରେଲିଆର ବର୍ତ୍ତମାନ ପ୍ରଧାନ-ନଗର) ସେଇଣ୍ଟ ଭିଇନ୍‌ସେଣ୍ଟ ଉପସାଗର ତୀରରେ ନିର୍ମିତ ହେଲା । ପରେ ଅଷ୍ଟ୍ରେଲିଅର ଦକ୍ଷିଣ-ପଶ୍ଚିମ କୋଣରେ ସ୍ୱାନ-ନଦୀ-ଉପନିବେଶର (Swan River settlement) ସୂତ୍ରପାତ ହେଲା—ଫଳରେ Perthର (ପଶ୍ଚିମ-ଅଷ୍ଟ୍ରେଲିଅର ବର୍ତ୍ତମାନ ରାଜଧାନୀ) ଉତ୍ପତ୍ତି ।

ପ୍ରଶ୍ନ:— ଅଷ୍ଟ୍ରେଲିଅର ସ୍ଥିତି ଓ ସୀମା ନିର୍ଦ୍ଦେଶ କର ।
ଅଷ୍ଟ୍ରେଲିଅର ଆବିଷ୍କାର-କଥା ସଂକ୍ଷେପରେ ଲେଖ ।

## ୨ ଗଠନ

ଅଷ୍ଟ୍ରେଲିଆ ଏକ ପ୍ରକାଣ୍ଡ କାପି-ପାତ୍ରାକୃତ (saucer-shaped) ମାଳଭୂମି—-ଅବଶ୍ୟ ଦାକ୍ଷିଣାତ୍ୟ ପରି ସେତେ ଉଚ୍ଚ ନୁହେଁ । ଏହା ପ୍ରାୟ ୬୦୦ ଫୁଟ ଉଚ୍ଚ । ମାନଚିତ୍ରରେ ଦେଖିପାରୁଛ, ଏ ମାଳଭୂମି ଉପରେ ଅନେକ ପର୍ବତମାଳା ଅବସ୍ଥିତ । ମହାଦେଶର ଚତୁର୍ଦ୍ଦିଗରେ ଅସଂଖ୍ୟ ଦ୍ୱୀପପୂର୍ଣ୍ଣ ଅଗଭୀର ସମୁଦ୍ର ଦ୍ୱାରା ବେଷ୍ଟିତ । କାର୍‌ପେଣ୍ଟେରିଆ ଉପସାଗର ଏବଂ ସ୍ପେନ୍ସର୍ ଓ ସେଣ୍ଟ ଭିଇନ୍‌ସେଣ୍ଟ୍ ଉପସାଗରମାନଙ୍କ ମଧ୍ୟରେ ମାଳଭୂମିର ଗୋଟିଏ ବିସ୍ତୃତ ଗହ୍ୱର ଭଳି ରହିଅଛି । ଏହି ଗହ୍ୱରର କେତେକ ଜଳ Eyre ହ୍ରଦକୁ ବହିଯାଏ । ଏ ହ୍ରଦଟି ସାଗର-ତଳଠାରୁ ନିମ୍ନ । ଗହ୍ୱରର ଅବଶିଷ୍ଟାଂଶ ମାରେ ଓ ଡାର୍‌ଲିଙ୍ଗ୍ ନଦୀର ଅବବାହିକା । ପ୍ରଶାନ୍ତ ଓ ଭାରତ ମହାସାଗର ଉପକୂଳରେ ମାଳଭୂମିଟି ସମୁଦ୍ରର ନିକଟବର୍ତ୍ତୀ ହୋଇଅଛି ।

ଅଷ୍ଟ୍ରେଲିଆ ତିନିଗୋଟି ପ୍ରଧାନ ଭାଗରେ ବିଭକ୍ତ କରାଯାଇ ପାରେ:—୧ ପୂର୍ବ ଉଚ୍ଚଭୂମି ୨ ପଶ୍ଚିମ ମାଳଭୂମି ଓ ୩ ମଧ୍ୟ-ସମତଳ । ପ୍ରଶାନ୍ତୋପକୂଳରେ ବିସ୍ତୃତ ପ୍ରଶସ୍ତ ଭୂମିଖଣ୍ଡଟି ପାହାଡ଼, ପର୍ବତରେ ଗଠିତ । ଏହି ପୂର୍ବୋପକୂଳ ପର୍ବତଶ୍ରେଣୀ ପ୍ରାୟ ୨୦୦୦ ମାଇଲ ଦୀର୍ଘ । ଦକ୍ଷିଣ-ପୂର୍ବ କୋଣରେ ତୁଷାରାଚ୍ଛନ୍ନ Australian Alps ଦେଖାଯାଏ । ଏହି କୋଣଟି ଅତି ଉଚ୍ଚ । ଏହାର ଉତ୍ତର ଭାଗରେ Blue Mountains —ଆହୁରି ଉତ୍ତରରେ Darling Downs ଓ Queensland ଉଚ୍ଚଭୂମି ପ୍ରସାରିତ । ପ୍ରଶାନ୍ତୋପକୂଳ—ପ୍ରସାରିତ ସମଗ୍ର ଉଚ୍ଚଭୂମି ବା ପାହାଡ଼-ଶ୍ରେଣୀକୁ "The Great Dividing Range" କୁହାଯାଏ । କାରଣ, ଏହା ପଶ୍ଚିମ ଭାଗର ବୃହତ୍ ସମତଳଠାରୁ ପୂର୍ବ ଭାଗର ସଙ୍କୀର୍ଣ୍ଣ-ଫଳବତୀ ଉପକୂଳ-ସମତଳକୁ ପୃଥକ୍ ବା ବିଭକ୍ତ (divide) କରୁ-ଅଛି । ଏହା ସମୁଦ୍ର ଆଡ଼କୁ ଖୁବ୍ ଗଡ଼ାଣିଆ ହୋଇ ଯାଇଅଛି ଏବଂ

ମହାଦେଶ ଭିତରକୁ ଅପେକ୍ଷାକୃତ ଅଳ୍ପ ଗଡ଼ାଣିଆ ହୋଇ ଚାଲିଅଛି । ଅତଏବ ମହାଦେଶମଧ୍ୟକୁ ବହି ଯାଉଥିବା ନଦୀମାନଙ୍କ ଅପେକ୍ଷା ଉପକୂଳ-ନଦୀ ସକଳ ଅଧିକ ଶ୍ରେଷ୍ଠ ।

କେତେକ ଭୌଗୋଳିକଙ୍କ ମତରେ, ପୂର୍ବଭାଗର ମାଳଭୂମିକୁ 'The Great Dividing Range' ନାମ ଦେବାଟା ଭୁଲ । ଏଠାର ପାହାଡ଼ମାନଙ୍କର ବହନ୍ତତା ଯୋଗେ ଭୂଭାଗଦୃଶ୍ୟରେ ବୈଷାଦୃଶ୍ୟ ପରିଲକ୍ଷିତ ହୁଏ । ଦକ୍ଷିଣ ଓ ଦକ୍ଷିଣ-ପୂର୍ବ ଭାଗରେ ମାଳଭୂମିକୁ ଉଚ୍ଚତମ । ଏହା ବିଭିନ୍ନ ନାମରେ ପରିଚିତ:—The Australian Alps; The Blue Mountains; The Liverpool and New England Ranges ଇତ୍ୟାଦି । Mount Kosciusko (୭୦୦୦ ଫୁଟ ଉଚ୍ଚ) ହେଉଛି ଅଷ୍ଟ୍ରେଲିଆର ଉଚ୍ଚତମ ଗିରିଶୃଙ୍ଗ । ଟାସ୍‌ମେନିଆ ପୂର୍ବ-ଉଚ୍ଚଭୂମିର ଏକ ବିଚ୍ଛିନ୍ନ ଅଂଶ ମାତ୍ର—ମାଳଭୂମି ଭଳିଆ ଦିଶେ । Ben Lomond ନିକଟରେ ଏହାର ଉଚ୍ଚତା ୫୦୦୦ ଫୁଟରୁ ଅଧିକ ।

ପଶ୍ଚିମ ମାଳଭୂମିର ସାଧାରଣ ଉଚ୍ଚତା ୨୦୦୦ ଫୁଟରୁ ଊଣା । ଏହାର (ପ୍ରଧାନତଃ ଦକ୍ଷିଣପଶ୍ଚିମ ଭାଗର) ସନ୍ନିକଟ (steep) ଧାର ବା ପ୍ରାନ୍ତ ସମୁଦ୍ର ଦିଗରୁ ପର୍ବତଶ୍ରେଣୀ ତୁଲ୍ୟ ଦେଖାଯାଏ । ଏଠାରେ Darling ଓ Stirling ଗିରିଶ୍ରେଣୀ ଅଛି । ଅଷ୍ଟ୍ରେଲିଆର ପଶ୍ଚିମୋପକୂଳରେ ଅଳ୍ପ କେତୋଟି ମାତ୍ର ଶ୍ରେଷ୍ଠ ପର୍ବତ ଦେଖାଯାଏ ।

ମଧ୍ୟ-ସମତଳର Eyre ହ୍ରଦର ଦକ୍ଷିଣ-ପୂର୍ବ ଦିଗରେ ଦକ୍ଷିଣ-ଅଷ୍ଟ୍ରେଲିଆ ଉଚ୍ଚଭୂମି ଅବସ୍ଥିତ । Mount Lofty ଓ Flinders Ranges ଏ ମାଳଭୂମିର ଅନ୍ତର୍ଗତ ।

ଅଷ୍ଟ୍ରେଲିଆର ପର୍ବତସବୁ ୟୁରୋପର ପର୍ବତଶ୍ରେଣୀ ଅପେକ୍ଷା ଅଧିକ ପ୍ରାଚୀନ; ସୁତରାଂ ସେ ସବୁ କାଳକ୍ରମେ କ୍ଷୟପ୍ରାପ୍ତ ହୋଇ

ଆସିଅଛି । ଏ ମହାଦେଶରେ କ୍ରିୟାଶୀଳ ଆଗ୍ନେୟଗିରି ଆଦୌ ଦେଖାଯାଏ ନାହିଁ ।

ପ୍ରଶ୍ନ:— 'The Great Dividing Range' ବୋଲିଲେ କ'ଣ ବୁଝୁଛ ?

ଅଷ୍ଟ୍ରେଲିଆର ପୂର୍ବୋପକୂଳ ସହିତ ପଶ୍ଚିମୋପକୂଳର ତୁଳନା କର ।



## ୩ ଉପକୂଳ ସୀମା

ଅଷ୍ଟ୍ରେଲିଆ-ଉପକୂଳ ନିକଟରେ Kangaroo, Meiville ଓ ଅନ୍ୟାନ୍ୟ କେତୋଟି କ୍ଷୁଦ୍ର ଦ୍ୱୀପ ଦେଖାଯାଏ । ଏଥିରୁ ବୁଝାଯାଏ, ମହାଦେଶଟି ଆଗେ ଅଧିକ ବିସ୍ତୃତ ଥିଲା । ଏ ସମସ୍ତ ଦ୍ୱୀପ ମହାଦେଶ-ସନ୍ନିହିତ ଭାଗରୁ ବିଚ୍ଛିନ୍ନ ହୋଇଅଛି । ସନ୍ନିହିତ ଅଂଶର ଗଠନ ଓ ଆକୃତି ଯେପରି, ଏ ସବୁ ଦ୍ୱୀପର ବି ସେହିପରି । ଉତ୍ତର-ପୂର୍ବ ଦିଗରେ ସମୁଦ୍ରର କୂଳଗଭୀର ଜଳ The Great Barrier Reef ଦ୍ୱାରା ବେଷ୍ଟିତ । (ସାଗରଜଳ ଉପରେ ଅବସ୍ଥିତ ଶିଳାମାଳାକୁ 'Reef' କହନ୍ତି ।) ଅତି ପ୍ରାଚୀନ କାଳରେ ମହାଦେଶଟି ଏହି ଶିଳାମାଳା (reef) ଯାଏ ପ୍ରସାରିତ ହୋଇଥିଲା । ଏହି ଶିଳାମାଳା ଜୀବିତ ପୋକମାନଙ୍କରେ ଗଠିତ—ଏହା ହେଉଛି ପୃଥିବୀର ବୃହତ୍ତମ ପ୍ରବାଳ-ଶିଳାମାଳା (coral reef) ।

ଉପକୂଳଟି ଅଭଗ୍ନ (unbroken)-- ସ୍ପେନ୍ସର୍ ଉପସାଗର ଓ କାର୍ପେଣ୍ଟେରିଆ ଉପସାଗର ନିକଟରେ ମାତ୍ର ଭଗ୍ନ ହୋଇଅଛି । ସ୍ପେନ୍ସର୍ ଉପସାଗରଟି ଏକ ଅଗଭୀର ନିମ୍ନଭୂମିର ଅଂଶ । କାର୍-ପେଣ୍ଟେରିଆ ଉପସାଗର ପଶ୍ଚିମମାଳଭୂମି—ପୂର୍ବଉଚ୍ଚଭୂମି-ମଧ୍ୟବର୍ତ୍ତୀ ଗହ୍ୱରର ଗୋଟିଏ ଅଂଶ । ଏହାର ଜଳ ଅଗଭୀର । ଦକ୍ଷିଣ ଭାଗର

The Great Australian Bight (ଉପସାଗର) ଜଳ ପାହାଡ଼ରେ ବେଷ୍ଟିତ । ଅଷ୍ଟ୍ରେଲିଆର ଉପକୂଳ-ସୀମାନ୍ତ ଭୂଚିତ୍ରରେ ଅତି ସହଜରେ ଚିହ୍ନି ପାରିବ, ମନେ ବି ରଖିପାରିବ । ଉତ୍ତରପୂର୍ବ ଉପକୂଳ ବୃହତ୍ Carpentaria ଉପସାଗରଯୋଗେ ଭଗ୍ନ ହୋଇଅଛି । ପଶ୍ଚିମଭାଗରେ ଏକ ସୁବସ୍ତୃତ ଉପଦ୍ୱୀପ । ପୂର୍ବ ଭାଗରେ ତ୍ରିକୋଣ ଉପଦ୍ୱୀପ । ଦକ୍ଷିଣୋପକୂଳନ୍ତ । (Great Australian Bight ଯୋଗେ) ମହାଦେଶ ଭିତରକୁ ବକ୍ର ହୋଇ ଯାଇଅଛି । ତାହାର ପୂର୍ବ ପ୍ରାନ୍ତରେ ସ୍ପେନ୍ସର୍ ଓ ଭିନ୍‌ସେଣ୍ଟ୍ ଉପସାଗର ମହାଦେଶ ମଧ୍ୟରେ ବହୁ ଦୂର ପ୍ରବେଶ କରିଅଛି । St. Vincent ତୀରରେ Adelaide Bass ପ୍ରଣାଳୀର ଏକ ଅଂଶ ଉତ୍ତର ଦିଗରେ ମହାଦେଶରେ ପ୍ରବିଷ୍ଟ ହୋଇଅଛି । ଭାରତ ଓ ଆଫ୍ରିକା ପରି, ଗଭୀର ଫାଙ୍କ (Opening) ଅଭାବରେ, ଉପକୂଳରୁ ମହାଦେଶ ମଧ୍ୟକୁ ଯାତ୍ରା କରିବା କଠିନ ।

ଅଷ୍ଟ୍ରେଲିଆ-ଉପକୂଳର ଏପରି ଏକ ବିଶିଷ୍ଟ ଲକ୍ଷଣ ଅଛି ଯାହା ଅନ୍ୟାନ୍ୟ ମହାଦେଶରେ ବିରଳ । ଏହା ହେଉଛି the Great Barrier Reef. ଏହା ପ୍ରାୟ ୧୨୦୦ ମାଇଲ ଦୀର୍ଘ—ଉତ୍ତର-ପୂର୍ବ-ଉପକୂଳଠାରୁ ୨୦ । ୩୦ ମାଇଲ ଦୂରରେ, କୁଇନ୍ସଲଣ୍ଡ୍‌ର ପୂର୍ବ ଦିଗରେ ଦେଖାଯାଏ । ଏହା Harvey ଉପସାଗର ଠାରୁ Torres ପ୍ରଣାଳୀ ଯାଏ ବିସ୍ତୃତ । ଏହା ଛୋଟ ଛୋଟ ପୋକଳା ବା ପ୍ରବାଳ-କୀଟ (Coral polyps) ମାନଙ୍କଦ୍ୱାରା ଗଠିତ । ପ୍ରବଳ-ଆବରଣନ୍ତ ୨୦୦ କିମ୍ବା ୩୦୦ ଫୁଟ ଗଭୀର । ତରଙ୍ଗାଘାତରେ ପୋକଳାସବୁ ଛିନ୍ନ ବିଚ୍ଛିନ୍ନ ହୋଇ ସ୍ଥାନେ ସ୍ଥାନେ ସ୍ତୂପୀକୃତ ହୋଇଅଛି । ଏହି ସମସ୍ତ ସ୍ତୂପୀକୃତ ପ୍ରବାଳରେ କେତେ ଗୋଟି ଦ୍ୱୀପ ସଂଗଠିତ । Laccadive ଦ୍ୱୀପ ଏଭଳି ଗଠିତ । ପ୍ରବାଳଶୈଳାବଳୀ ବାହାରେ ଉପୂଙ୍କର ଝଡ ତୋଫାନ ହେବାବେଳେ, ପ୍ରବାଳ-ଶିଳା ଓ ସମୁଦ୍ର-ତୀର ମଧ୍ୟରେ

ଜଳ ଧୀର ସ୍ଥିର ରହେ । ଏଠାରେ ପ୍ରଶାନ୍ତମହାସାଗରର ତରଙ୍ଗ-ତାଣ୍ଡବ ନାହିଁ । ଏଣୁ ଉପକୂଳରେ ସମୁଦ୍ର-ବାଣିଜ୍ୟ ସୁବିଧାରେ ଚାଲିଥାଏ । ଲୋକେ ଏହି ଶାନ୍ତ, ସ୍ଥିର ଜଳରେ ମୁକ୍ତା (pearls) ସଂଗ୍ରହ କରନ୍ତି, ସାମୁଦ୍ରିକ-କଚ୍ଛପ (turtles) ଧରନ୍ତି । ପ୍ରବାଳଶିଳାମାଳା ଓ ତୀର-ମଧ୍ୟବର୍ତ୍ତୀ ଭାଗଟି ୨୦ ଠାରୁ ୭୦ ମାଇଲ ଓସାର । ଏ ଭାଗଟି ଅନେକ ଜଳମଗ୍ନ-ପାହାଡ଼ରେ ପୂର୍ଣ୍ଣ; ସୁତରାଂ ଏଠାରେ ପୋତ ପରିଚାଳନ କରିବା କଠିନ । ଏ ବାଟେ ଯିବା ନାବିକମାନେ ସାଧାରଣତଃ ରାତିବେଳେ ନଙ୍ଗର ପକାଇ ଜାହାଜର ଗତି ବନ୍ଦ କରିଥାନ୍ତି ।

କ୍ଷୁଦ୍ର ପ୍ରବାଳକୀଟମାନେ ସମୁଦ୍ରଜଳର ଖଣିଜ ପଦାର୍ଥରେ ଖୋଳ ବା କଙ୍କାଳ ଗଢ଼ନ୍ତି । କୀଟସବୁ ମରିଗଲେ, ଏହି କଙ୍କାଳଗୁଡ଼ିକ ସଂଚିତ ହୋଇ ରହେ ଏବଂ କେବେ କେବେ ଏଥିରୁ ସୁବିସ୍ତୃତ ଶିଳାମାଳା (reef) ଗଠିତ ହୋଇ ସାଗରତୀର ନିକଟରେ ସ୍ୱଳ୍ପଗଭୀର ଜଳରେ ବ୍ୟାପ୍ତ ହୋଇ ଯାଏ । ସାଗରତଳର ଅନେକାଂଶ ମନୋହର ପ୍ରବାଳ-ବନରେ ପୂର୍ଣ୍ଣ । ପୋହଳାପୋକମାନେ ସମୁଦ୍ରତଳର ଉପଯୁକ୍ତ, ସୁବିଧାଜନକ ସ୍ଥାନରେହିଁ ସୁନ୍ଦର ବଢ଼ିଥାନ୍ତି । ଶୀତଳ ଜଳରେ କିମ୍ବା ୧୦୦ଫୁଟରୁ ଅଧିକ ଗଭୀର ଜଳରେ ରହି ପାରନ୍ତି ନାହିଁ । ଅତଏବ ସେମାନେ ପ୍ରଧାନତଃ ଉଷ୍ଣ ସାଗର ଓ ମହାସାଗରର ସ୍ୱଳ୍ପଗଭୀର ଭାଗରେ ଦେଖାଯାଇଥାନ୍ତି । ପ୍ରବାଳକୀଟମାନେ ମାଛ ପରି ଏଣେତେଣେ ଆହାର ଖୋଜି ଯାଇ ପାରନ୍ତି ନାହିଁ । ସମୁଦ୍ରର ଯେଉଁଭାଗକୁ ସାଗର-ସ୍ରୋତରେ (sea-currents) ଖାଦ୍ୟ ଭାସି ଆସେ, ସେହି ଭାଗରେହିଁ ପୋହଳାସବୁ ରହି ବଢନ୍ତି । ଅବିଶୁଦ୍ଧ ସମୁଦ୍ରପାଣିରେ ଅଥବା ନଦୀ-ମୁହାଣର ଠିକ୍ ସମ୍ମୁଖଭାଗରେ ଅର୍ଥାତ୍ ଅବିମଳ ଜଳରେ ସେମାନେ ରହି ପାରନ୍ତି ନାହିଁ । —ଗୋଳିଆ ପାଣିରେ ମରି ପଡ଼ନ୍ତି । ପୋହଳାଶିଳାମାଳା ସମୁଦ୍ରଜଳର ଉପରିଭାଗରେ କେବେ ଗଠିତ ହୁଏ ନାହିଁ —ଜଳର ଉପରିଭାଗ ପର୍ଯ୍ୟନ୍ତ

ମାତ୍ର ଉଠିଥାଏ । ଏହି ଲହଗ୍ଣ ଆଘାତରେ ପୋହଳାସବୁ ଖଣ୍ଡ ଖଣ୍ଡ ହୋଇ ସ୍ତୂପାକାରରେ ପଡ଼ି ରହେ, ଫଳରେ ପ୍ରବାଳଶିଳା ଉଚ୍ଚ ହୋଇ ଥାଏ । ଘ୍ଣୀକୃତ ପ୍ରବାଳଶିଳା ଉପରେ ବୃକ୍ଷ ଲତା ଜନ୍ମେ । ବୃକ୍ଷାଦିର ବୃଦ୍ଧି ଓ କ୍ଷୟ ଯୋଗେ ପ୍ରବାଳ-ଶିଳାର ଊର୍ଦ୍ଧ୍ୱସ୍ତର (soil) ଗଠିତ ହୁଏ । ପ୍ରବାଳ-ଦ୍ୱୀପ ଏପରି କ୍ରମଶଃ ଗଠିତ ହୋଇଥାଏ । ଭାରତର ପଶ୍ଚିମୋପକୂଳ ନିକଟସ୍ଥ ମାଲ୍‌ଦ୍ୱୀପ ଓ ଲାକାଦ୍ୱୀପ୍ ଦ୍ୱୀପ ପ୍ରବାଳ-ଗଠିତ । ଭାରତ ଓ ସିଂହଳ ମଧ୍ୟବର୍ତ୍ତୀ ଅଗଭୀର ପ୍ରଣାଳୀରେ ମଧ୍ୟ ଅନେକ ପ୍ରବାଳ-ଶିଳା ଦେଖାଯାଏ ।

ଆଗେ କୁହାଯାଇଛି ଯେ, ଅଷ୍ଟ୍ରେଲିଆର ଉପକୂଳ ଅଭଗ୍ନ— ଉପସାଗର ବା ଉପଦ୍ୱୀପ ଗୁଡ଼ାଏ ଦେଖାଯାଏ ନାହିଁ । ଏଣୁ ଏଠାରେ ଅଳ୍ପ କେତୋଟି ମାତ୍ର ପୋତାଶ୍ରୟ ଅଛି । ଅଭଗ୍ନ ଉପକୂଳ ଯୋଗେ ଅଷ୍ଟ୍ରେଲିଆର ଜଳବାୟୁ ପ୍ରୀତିକର ନୁହେ । ବାଣିଜ୍ୟ ବ୍ୟବସାୟ ସୁନ୍ଦର ହୁଏ ନାହିଁ । ଯେଉଁ ଦେଶ ବା ମହାଦେଶର ଉପକୂଳ ଭଗ୍ନ ବା ବକ୍ର, ଉତ୍ତମ ସଡ଼କ, ବେଶି ରେଲପଥ, ନାବ୍ୟ ନଦୀ ଓ ପୋତାଶ୍ରୟ ଥାଏ, ସେଇ ସ୍ଥାନର ବାଣିଜ୍ୟ ବ୍ୟବସାୟ ଖୁବ୍ ବିସ୍ତୃତ, ଉନ୍ନତ ଧରଣର । ଭଗ୍ନ ଉପକୂଳରେ ଅଧିକ ପୋତାଶ୍ରୟ, ପୋତାଶ୍ରୟ ଚତୁର୍ଦ୍ଦିଗରେ ଅନେକ ସହର ଦେଖା ଯାଇଥାଏ ଏବଂ ପୋତାଶ୍ରୟ ଯୋଗେ ସାମୁଦ୍ରିକ ବାଣିଜ୍ୟର ବେଶ ସୁବିଧା ହୁଏ । ଯେ କୌଣସି ମହାଦେଶର ସର୍ବପ୍ରଧାନ ବାଣିଜ୍ୟ-ସହର ସକଳ ସାଗରୋପକୂଳରେ ଅବସ୍ଥିତ । ଏହି ସମସ୍ତ ସ୍ଥାନରେ ଦେଶର ବାଣିଜ୍ୟ ସାଗରିକ ବାଣିଜ୍ୟ ସଙ୍ଗେ ମିଳିତ ହୋଇଥାଏ । ଆଜି କାଲି ସାଗର-ବାଣିଜ୍ୟ ବଡ଼ ବଡ଼ ଷ୍ଟୀମର୍ ସାହାଯ୍ୟରେ ଚଳଥାଏ । ଏପରି ବାଣିଜ୍ୟ-ଷ୍ଟୀମାର୍ ପାଇଁ ସମୁଦ୍ରଜଳ ୨୦ ବା ୩୦ ଫୁଟ ଗଭୀର ରହିବା ଦରକାର । ଅନ୍ତତଃ ଏତିକ ଗଭୀର ନ ହେଲେ ପୋତାଶ୍ରୟ ବା ବନ୍ଦରଠାରୁ କିଛି ଅଧିକ ଦୂରରେ ସମୁଦ୍ରଉପରେ ଷ୍ଟୀମର୍‌କୁ ନଙ୍ଗର

ପକାଇବାକୁ ହୋଇ ଥାଏ — ତୀର ଠାରୁ ଏତେ ଦୂରରେ (ନୌକାରେ) ମାଲ ନେଇ ଲଦବା, ଉତାରବା ସମୁଦ୍ରବାଣିଜ୍ୟ ପକ୍ଷରେ ବଡ଼ କ୍ଷତିଜନକ ।

ପ୍ରଶ୍ନ—  ଭଗ୍ନ ଉପକୂଳର ଉପକାର ବୁଝାଇଦିଅ ।

ପ୍ରବାଳଶିଳାମାଳା ଓ ପ୍ରବାଳଦ୍ୱୀପ ଗଠିତ ହୁଏ କପରି ?

ଅଷ୍ଟ୍ରେଲିଆରେ ଯଥେଷ୍ଟ ବାଣିଜ୍ୟ ହୋଇ ପାରେନାହିଁ କାହିଁକି ?



## ୪ ନଦୀ

ଅଷ୍ଟ୍ରେଲିଆର ଅଧିକାଂଶ ଶୁଷ୍କତା ବା ନୀରସତା ହେତୁରୁ ସେଠାରେ ନଦୀର ଅଭାବ ଅତ୍ୟନ୍ତ ଅନୁଭୂତ ହୁଏ । ସେଠାର ନଦୀସବୁ ଦୁଇ ଶ୍ରେଣୀର, —କ୍ଷୁଦ୍ର ଓ ଚଞ୍ଚଳଗତି ଏବଂ ଦୀର୍ଘ ଓ ମନ୍ଦଗତି । The Great Dividing Range ରୁ ବାହାରି ପ୍ରଶାନ୍ତ ମହାସାଗରକୁ ବହିଯିବା ନଦୀସବୁ ଖୁବ୍ ଛୋଟ. ତେବେ ନିୟମିତ ବୃଷ୍ଟିପାତଯୋଗେ ଏ ସମସ୍ତ ନଦୀରେ ବର୍ଷସାରା ଢେର ପାଣି ରହେ—କେବେ କେବେ ଘୋର ବନ୍ୟା ବି ହୁଏ । The Great Divideରୁ ଜାତ ହୋଇ ମହାଦେଶ ଭିତରକୁ ପ୍ରବାହିତ ହେବା ନଦୀସକଳ ଅପେକ୍ଷାକୃତ ଦୀର୍ଘ ଓ ମନ୍ଥରଗତି; କିନ୍ତୁ ସ୍ୱଳ୍ପ ବର୍ଷା ଯୋଗୁଁ ଏ ସକଳ ନଦୀ ଅଳ୍ପ ଜଳ ଧରି ଚାଲନ୍ତି । ଦୀର୍ଘ ଶୁଷ୍କ ବା ଗ୍ରୀଷ୍ମ ଋତୁରେ ଏ ନଦୀ ସବୁ ଏକାବେଳକେ ଅଦୃଶ୍ୟ ହୋଇପଡ଼ନ୍ତି । ତେବେ Murray ନଦୀର କଥା ଅଲଗା ।

Murray ନଦୀ Australian Alpsରେ ଜାତ ହୁଏ ଏବ ପଶ୍ଚିମଦିଗରେ ନ୍ୟୁ ସାଉଥ୍ ୱେଲ୍ସ୍ ଓ ଭିକ୍ଟୋରିଆର ପ୍ରାନ୍ତଭାଗରେ ବହି ଯାଇ ଭାରତ ମହାସାଗରରେ ପ୍ରବେଶକରେ । Darling ଏହାର ପ୍ରଧାନ ଉପନଦୀ । Australian Alpsର ଉଚ୍ଚତମ

ଶୃଙ୍ଗସକଳ ସର୍ବଦା ବରଫାଚ୍ଛନ୍ନ ରହେ । ଏଠାର ବରଫ ତରଳି ବର୍ଷ ତମାମ ମାରେ ନଦୀଙ୍କ ଜଳ ଯୋଗାଏ । ଡ଼ାର୍‌ଲିଂ ନଦୀ ଦ୍ୱାରା ଏକ ବିସ୍ତୃତ ପ୍ରଦେଶ ପ୍ଲାବିତ ହୋଇଅଛି । ମାନଚିତ୍ରରେ ଏ ନଦୀଟି ବଡ ଦିଶେ । ବର୍ଷା ଦିନେ ମଧ୍ୟ ଏହା ବଡ଼ ଦେଖାଯାଏ--ଯେତେବେଳେ ଏଥିରେ ଏକ ହଜାର ମାଇଲ ପର୍ଯ୍ୟନ୍ତ ଷୋଡ ଚଳିତ ହୋଇପାରେ । ତେବେ ଦୀର୍ଘକାଳସ୍ଥାୟୀ ଗ୍ରୀଷ୍ମ ଋତୁରେ ଡ଼ାର୍‌ଲିଂର ପୋଷକ ନଦୀସବୁ ଶୁଖିଯାଏ । Rann of Catch ଭଳି ଗୋଟିଏ ସ୍ୱଳ୍ପଗଭୀର ଅବ୍ୟବହାର୍ଯ୍ୟ ଜଳାଶୟ ବା ହ୍ରଦ [lagoon] ନିକଟରେ ମାରେ ନଦୀ ସମୁଦ୍ରରେ ମିଳିତ ହୁଏ ।

ଅଷ୍ଟ୍ରେଲିଆର ଉତ୍ତରୋପକୂଳରେ ଅନେକ ମୌସୁମି-ପୁଷ୍ଟ ନଦୀ ପ୍ରବାହିତ;କିନ୍ତୁ ସେଠାରେ ଅତ୍ୟଳ୍ପ ଲୋକ ବାସ କରିବାରୁ ସେଠା ନଦୀସବୁ ବର୍ତ୍ତମାନ କୌଣସି ଉପକାରରେ ଆସେ ନାହିଁ । ପଶ୍ଚିମୋପକୂଳରେ Swan ନଦୀ Perth ନଗର ମଧ୍ୟରେ ବହିଯାଇଅଛି । ଦକ୍ଷିଣୋପକୂଳରେ ସହସ୍ରାଧିକ ମାଇଲ ଯାଏଁ କୌଣସି ନଦୀ Bightରେ ପ୍ରବେଶ କରୁନାହିଁ । ଅଷ୍ଟ୍ରେଲିଆରେ ଏପରି ନଦୀର ଅଭାବ ଅନୁଭୂତ ହୁଏ ।

ଏ ମହାଦେଶର ଯେ କୌଣସି ନଦୀ ଗଙ୍ଗା ପରି ଉପଯୋଗୀ ନୁହେ । ଗୋଟିଏ ବଡ ମାନଚିତ୍ରରେ ଦେଖାଯିବା ନଦୀ ମାନଙ୍କ ମଧ୍ୟରେ ଅନେକେ ଖରାଦିନେ ଶୁଷ୍କ ହୋଇ ପଡ଼ନ୍ତି । ଏଥିରେ ମହାଦେଶର ବିସ୍ତର କ୍ଷତି ହୋଇଥାଏ । ଏଠାରେ ଉପଯୁକ୍ତ ଓ ଅଧିକ ସଂଖ୍ୟକ ନଦୀ-ମାର୍ଗ ନ ଥିବାରୁ, ଏଠାର ପର୍ବତ-ଶ୍ରେଣୀ ଉପରେ, ଶୁଷ୍କ ସମତଳ ଭୂମିରେ ଅନେକ ସଡ଼କ ଓ ରେଳପଥ ନିର୍ମିତ ହୋଇଅଛି । ଏହି କାରଣରୁ ଅଷ୍ଟ୍ରେଲିଆର ପ୍ରଧାନ ସହରସମୂହ ସାଗରୋପକୂଳରେ କିମ୍ବା ତାହା ନିକଟରେ ଅବସ୍ଥିତ । ଏହି ନଦୀ-ଅଭାବ ନିବନ୍ଧନ ଏ ମହାଦେଶର ମଧ୍ୟ ଭାଗ ଶତାଧିକ ବର୍ଷ କାଳ ଅନାବିଷ୍କୃତ ଅବସ୍ଥାରେ ପଡ଼ି ରହିଲା । ଏ ଭାଗର ଅଧିକାଂଶ ଶୁଷ୍କ ମରୁଭୂମି କିମ୍ବା ନୀରସ ପଡିଆ ପ୍ରାନ୍ତରରେ ଆଚ୍ଛାଦିତ । ସ୍ଥାନେ

ସ୍ଥାନେ ଦେଖାଯିବା ଗହ୍ୱରର କେତେକାଂଶ ଜଳୁଆ [swampy]. ୨।୩ ବର୍ଷରେ ଥରେ ଏ ସମସ୍ତ ଗହ୍ୱରରେ ବଡ଼ି ପଡ଼ି କେତେକ ସପ୍ତାହ ମାତ୍ର ରହେ । ବାସ୍ତବକ ଏସବୁ ଲବଣାକ୍ତ ଭୂମିବେଷ୍ଟିତ କର୍ଦ୍ଦମ-ଗହ୍ୱର ମାତ୍ର । ଅଷ୍ଟ୍ରେଲିଆର ହୃଦୟ ବା ମଧ୍ୟଭାଗ ନୀରସ, ମୃତ । ସେଠାର ଅନେକ ଲୋକ କହୁଥାନ୍ତି,— "What does it matter if no rains fall and no rivers flow over large parts of the interior ? Perhaps we may find water in plenty below the surface " ମଧ୍ୟ-ସମତଳ-ଅଞ୍ଚଳରେ ବର୍ଷା ହୁଏ ନାହିଁ , କିନ୍ତୁ ଭୂଗର୍ଭଜାତ ଜଳ ଏହା ଅଭାବ ପୂରଣ କରିଥାଏ । ଦକ୍ଷିଣ-ପଶ୍ଚିମ-କ୍ୱିନ୍ସଲଣ୍ଡ, ନ୍ୟୁ ସାଉଥ ଡ୍ଜ୍ୱଏଲସ୍ ଓ ଦକ୍ଷିଣ-ଅଷ୍ଟ୍ରେଲିଆର ନିକଟବର୍ତ୍ତୀ ଅଞ୍ଚଳରେ ଶତାଧିକ କୂପ ଖୋଳା ଯାଇଅଛି— ଏ ସମସ୍ତ କୂପରୁ ବିନା କଳରେ ଜଳ ବାହାରି କୃଷି କାମରେ ଲାଗେ, ସଞ୍ଚିତ ରହେ ।

ପ୍ରଶ୍ନ :—ଅଷ୍ଟ୍ରେଲିଆର ନଦୀସବୁ ବିଶେଷ ଉପଯୋଗୀ ନୁହେଁ କି କାରଣରୁ ?
ଏ ମହାଦେଶର ମଧ୍ୟଭାଗ କହିଁକିରୁ ଶୁଷ୍କ ଓ ନୀରସ ?

## ୪ ଜଳବାୟୁ

ଅଷ୍ଟ୍ରେଲିଆ ମୁଖ୍ୟ ଗୋଟି ଜଳବାୟୁ-ଭାଗରେ ବିଭକ୍ତ:—୧. ଉତ୍ତର ଗ୍ରୀଷ୍ମମଣ୍ଡଳୀୟ ମୌସୁମି ବିଭାଗ—ଏଠାରେ ବର୍ଷତମାମ ଶୈତ୍ୟ ଓ ତାପର ପରିମାଣ ଅଧିକ ରହେ, ଖରାଦିନେ ଭାରି ବୃଷ୍ଟି ହୁଏ । ୨ ପୂର୍ବ ଉଚ୍ଚଭୂମି—ଏଠାରେ ସକଳ ଋତୁରେ ବୃଷ୍ଟି ହୁଏ । ଏହା ଶୀତ-ଋତୁରେ ଶୀତଳ, ଗ୍ରୀଷ୍ମ ଋତୁରେ ଅତିଶୟ ଗରମ ରହେ । ୩ ଦକ୍ଷିଣାଞ୍ଚଳ —ଏହା ଖରାଦିନେ ବୃଷ୍ଟିହୀନ ଓ ଗରମ, ଶୀତ ଦିନେ ଉଷ୍ମ ବା ଥଣ୍ଡା ରହେ ।

୪ ମଧ୍ୟଭାଗ —ଏଠାରେ କମ ବର୍ଷା ପଡ଼େ, ଭୟଙ୍କର ଗ୍ରୀଷ୍ମ ଓ ଉଷ୍ଣ ଶୀତଋତୁ ହୋଇଥାଏ । ଏଠାର ଶୁଷ୍କ ବାୟୁ ଯୋଗେ ତାପ-ବିକୀରଣ (radiation) ଅତି ଦ୍ରୁତ ଗତିରେ ହୁଏ ।

ଅଷ୍ଟ୍ରେଲିଆ-ଜଳ ବାୟୁର ବିଶିଷ୍ଟ ଲକ୍ଷଣ ହେଉଛି ଶୁଷ୍କ ତାପ । ଉତ୍ତରଭାଗଟି ବିଷୁବରେଖା ନିକଟବର୍ତ୍ତୀ, ଏଣୁ ଦକ୍ଷିଣାଞ୍ଚଳ ଅପେକ୍ଷା ଅଧିକ ଗରମ । ସୁଦୂର ଉତ୍ତର ଭାଗରେ ଓ ପୂର୍ବୋପକୂଳରେ ପ୍ରଚୁର ବର୍ଷା ହୁଏ । ବାସ୍ତବିକ ପୂର୍ବୋପକୂଳରେ ପର୍ବତଶ୍ରେଣୀ ଥିବାରୁ ପ୍ରୟୋଜନାତିରିକ୍ତ ବୃଷ୍ଟି ପଡ଼ିଥାଏ । ମଧ୍ୟଭାଗର ବର୍ଷା ଅତି କମ୍ ଓ ଅନିଶ୍ଚିତ । ମୋଟରେ ଏ ମହାଦେଶର ଜଳବାୟୁ ଗରମ ଓ ଶୁଷ୍କ । ଏହା ଏକ ମରୁଭୂମି ଓ ପତିତପ୍ରାନ୍ତରମୟ ମହାଦେଶ କହିଲେ ଚଳେ । ପଶ୍ଚିମରେ, ଦକ୍ଷିଣ ଲଘିମା ୨୦ ଡ଼ିଗ୍ରି ଓ ମକରକ୍ରାନ୍ତି ମଧ୍ୟରେ The Great Sandy Desertଦେଖାଯାଏ ଏବଂ ଦକ୍ଷିଣ ଲଘିମା ୩୦ ଡ଼ିଗ୍ରୀର କିଛି ଉତ୍ତର ଭାଗରେ The Great Victoria ମରୁଭୂମି ଅବସ୍ଥିତ । ମକର କ୍ରାନ୍ତି (Tropic of Capricorn ) ମହାଦେଶର ମଧ୍ୟଭାଗ ଭେଦ କରି ଯାଇଅଛି । ଅଷ୍ଟ୍ରେଲିଆର କେନ୍ଦ୍ର ଭାଗଟି ସମୁଦ୍ରଠାରୁ ବହୁ ଦୂରରେ ଅବସ୍ଥିତ । ବୃଷ୍ଟିମେଘଟକୁ Great Dividing Range ରୋକି ଅଟକେ ରହେ, ମହାଦେଶ-ମଧ୍ୟକୁ ଯାଏନାହିଁ — ଯାହା କିଛି ଯାଏ ତାହା ସେଠାର ଅତ୍ୟଧିକ ତାପରେ ଛିନ୍ନ ଭିନ୍ନ ବା ଅପଚିତ ହୋଇଯାଏ, ବର୍ଷା ହୁଏ ନାହିଁ । ଏଣୁ ମଧ୍ୟଭାଗଟି ଖରାଦିନେ ଖୁବ୍ ଗରମ ରହେ । ଏହାର ଅନେକାଂଶ ମରୁଭୂମି । ଶୀତଦିନେ ଅଷ୍ଟ୍ରେଲିଆର କେବଳ ଦକ୍ଷିଣ-ପୂର୍ବ କୋଣ ଓ ଟାସ୍‌ମେନିଆ ଶୀତଳ ରହେ । ତଥାପି ଏ ଅଞ୍ଚଳରେ କେବେ ବରଫ ପଡ଼େ ନାହିଁ, Australian Alps କିନ୍ତୁ ବରଫାବୃତ ରହିଥାଏ । ପଶ୍ଚିମୋପ-କୂଳରେ ଅତି ଉଣା ବର୍ଷା ହୁଏ, କାରଣ ଦକ୍ଷିଣ-ପୂର୍ବ ବାଣିଜ୍ୟବାୟୁ ଭୂମି

ଅଳ୍ପ ଏଠାରୁ ବହୁ ଅଟେ । ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମ କୋଣରେ ପଶ୍ଚିମ-ବାୟୁ ଯୋଗେ ବର୍ଷା ହୁଏ । ଉପକୂଳର ଯେ କୌଣସି ଅଂଶରୁ ବାହାର ମହାଦେଶର କେନ୍ଦ୍ରଭାଗ ପ୍ରତି ଯେତିକି ଅଗ୍ରସର ହେବ, ସେତିକି କମ୍ ବର୍ଷା ହେବାର ଦେଖିପାରିବ ।

ପ୍ରଶ୍ନ:— ଅଷ୍ଟ୍ରେଲିଆର ଉତ୍ତରାଞ୍ଚଳଟି ଦକ୍ଷିଣାଞ୍ଚଳ ଅପେକ୍ଷା ଅଧିକ ଗରମ କହେବୁ ?

ଏ ମହାଦେଶର କେଉଁ କେଉଁ ଭାଗରେ ପ୍ରଚୁର ବର୍ଷା ହୁଏ, କାହିଁକି ହୁଏ ?

———୦:୦:୦———

## ୬ ଉଦ୍ଭିଦ୍‌ଜାତି ଓ ଜୀବଜନ୍ତୁ

ବୃଷ୍ଟିପାତ ମାନଚିତ୍ରରୁ ଅଷ୍ଟ୍ରେଲିଆର ଉଦ୍ଭିଦଜାତ କଥା ବେଶ ଜଣା ପଡ଼େ । କାର୍‌ପେଣ୍ଟେରିଆ ଉପସାଗର ଚତୁର୍ଦ୍ଦିଗରେ ଏବଂ ଉତ୍ତର-ପୂର୍ବ ଉପକୂଳରେ ତାଳ, ନଡ଼ିଆ, ଖଜୁରି, ବାଉଁଶ, ବେତ, ଚନ୍ଦନ ଇତ୍ୟାଦି ଗ୍ରୀଷ୍ମମଣ୍ଡଳୀୟ ବୃକ୍ଷର ଅରଣ୍ୟ ଦେଖାଯାଏ । ଏ ଦୁଇ ସ୍ଥାନରେ ମୌସୁମୀ ବର୍ଷା ପଡେ । ଏ ଦୁଇ ଗ୍ରୀଷ୍ମପ୍ରଦେଶରେ କଦଳୀ, ଧାନ, ନୀଳ, ଆଖୁ, ତମାଖୁ ଇତ୍ୟାଦି ଉତ୍ପନ୍ନ କରାଯାଏ । ଅଷ୍ଟ୍ରେଲିଆର ସର୍ବପ୍ରଧାନ ବୃକ୍ଷ ହେଉଛି eucalyptus (gum trees) ବା ଚିରହରିତ୍ ବୃକ୍ଷ। ନାନାଶ୍ରେଣୀର ୟୁକାଲିପ୍‌ଟସ୍ ଗଛ ଦେଖାଯାଏ — ଛୋଟ ଗୁଳ୍ମ ଓ ପ୍ରକାଣ୍ଡ ବୃକ୍ଷ । ଏ ଗଛ ବଢ଼େଇମାନଙ୍କର ସକଳ କାମରେ ଲାଗେ । ୟୁକାଲିପ୍‌ଟସ୍ ତେଲ ଔଷଧରୂପେ ବ୍ୟବହୃତ ହୁଏ । ଏ ଗଛର ମଞ୍ଜି ଭାରତର ଅନେକ ସ୍ଥାନରେ ବୁଣା ହୋଇଅଛି । ଶୀତ ଋତୁର ପଶ୍ଚିମ ପବନ ଦକ୍ଷିଣ-ପଶ୍ଚିମ କୋଣକୁ ଏବଂ ପ୍ରଶାନ୍ତ ମହାସାଗରର ଦକ୍ଷିଣ ପୂର୍ବ-ବାଣିଜ୍ୟ-ବାୟୁ ପୂର୍ବୋପକୂଳକୁ ବର୍ଷା ଧରି ଆସେ । ଏ ଦୁଇ

ସ୍ୱଳଳ। ଉପକୂଳ-ପ୍ରଦେଶରେ **eucalyptus**-ବନ ବିସ୍ତୃତ । ଅଷ୍ଟ୍ରେ-ଲିଆର ଅନ୍ୟାନ୍ୟ ଆଦମ ବୃକ୍ଷ, — **acacia, beech** ଓ ଦେବଦାରୁ **(cedar)** ।

ପଶ୍ଚିମ-ଅଷ୍ଟ୍ରେଲିଆରେ **Karri** ଓ **Jarrah** ବୃକ୍ଷ ଖୁବ୍ ଉଚ୍ଚ ହୋଇ ଉଠେ । ଏ ଦୁଇ ଗଛର ଗଣ୍ଡି ଭାରତ ଓ ସିଂହଳକୁ ଅଣାଯାଇ ଏଥିରେ ରେଳ ଶଯ୍ୟାନ-କାଷ୍ଠ **(railway-sleepers)** ତିଆର ହୁଏ । ଏ ଗଣ୍ଡିକୁ କେବେ ଉଇ ଧରେ ନାହିଁ । ଉପକୂଳର ବୃଷ୍ଟି-ପୁଷ୍ଟ ଅଞ୍ଚଳରୁ ମହାଦେଶ ମଧ୍ୟକୁ ଗଲେ , ସ୍ୱଳ୍ପବୃକ୍ଷପୂର୍ଣ୍ଣ ଗୋଚର-ଭୂମି ଦେଖାଯାଇ ପାରବ । ମହାଦେଶର ଅନ୍ତର ମଧ୍ୟଭାଗରେ ବୃକ୍ଷହୀନ ଅପାର ଗୋଚରମୟ ପଞ୍ଚତପ୍ରାନ୍ତର ଅବସ୍ଥିତ । ମଧ୍ୟଭାଗର ଅଧିକାଂଶ **spinifen** ନାମକ ଏକ ଦୀର୍ଘ, ତୀକ୍ଷାଗ୍ର, ବକ୍ଷାକୃତ ତୃଣରେ ଆବୃତ ବନ୍ତୁ ଯେଉଁଠାରେ ଭୂଗର୍ଭ-ଜଳ **[under-ground water]** ମିଳେ , ଅଥବା ପର୍ବତ ଶ୍ରେଣୀ ହୋଗେ ଯେଉଁଠାରେ ବର୍ଷା ହୁଏ, ସେଇ ସ୍ଥାନରେ ଶକ୍ତ ତୃଣ, ଖର୍ବ ଗୁଳ୍ମ ଓ ମାଂସଳ, ରସାଳ ଲତା ଦେଖିବାକୁ ମିଳେ । ଗୋଚର-ଭୂମିର ଅନେକ ଭାଗରେ ଗହମ-ଚାଷ ହୁଏ ।

ମହାଦେଶଟି ମହାସାଗରମାନଙ୍କଦ୍ୱାରା ଅନ୍ୟାନ୍ୟ ମହାଦେଶ-ସମୂହରୁ ବିଚ୍ଛିନ୍ନ ହୋଇଥିବାରୁ. ସେଠାର ଉଦ୍ଭିଦଜାତ ଓ ଜୀବଜନ୍ତୁ ଅପୂର୍ବ ଧରଣର, ଏକାବେଳକେ ଭିନ୍ନ ଅକୃତ ଓ ପ୍ରକୃତର । ୟୁରୋପୀୟ ଉପନିବେଶିକମାନଙ୍କ ଦ୍ୱାରା ଅଷ୍ଟ୍ରେଲିଆକୁ ଅନେକ ନୂତନ ନୂତନ ବୃକ୍ଷ, ଲତା ଓ ଶସ୍ୟ ଆମଦାନୀ ହୋଇଅଛି—ଯଥା, ଗହମ, ମକା, ଯବ ଦ୍ରାକ୍ଷା, ତମାଖୁ, କାଫି, ଆଖୁ ଇତ୍ୟାଦ ।

ଜୀବଜନ୍ତୁ:—

ଆଗେ କହାଯାଇଛି, ଅଷ୍ଟ୍ରେଲିଅର ପଶୁ, ପକ୍ଷୀ, ବୃକ୍ଷ, ଲତା ସବୁ ଅପୂର୍ବ, ଅଦ୍ଭୁତ ଧରଣର—ଅନ୍ୟାନ୍ୟ ମହାଦେଶରେ ବିରଳ। ଖାସ୍ ଅଷ୍ଟ୍ରେଲିଅର ଅଧିକାଂଶ ଜନ୍ତୁ ସ୍ଫୀତ-ଉଦର-ବଶିଷ୍ଟ ବା ଥଳିଯୁକ୍ତ (pouched). ଏଠାର ଚତୁଷ୍ପଦ ଦୁଇ ଗୋଡ଼ରେ ଚାଲେ, କୋକୀ [fox] ଉଡ଼େ, ପକ୍ଷୀ ଧାଏଁ, କାଉ ଗାଏ ଏବ ମାକଡ଼ସା ବା ବୁଢ଼ୀଅଣୀ ସଁ ସଁ ଶବ୍ଦ କରେ। ଏ ମହାଦେଶର କାଉ ଧୋବ। ବଡ଼ ବିଚିତ୍ର ଏ ମହାଦେଶ !

ୟୁରୋପୀୟ ଉପନିବେଶିକମାନେ ସର୍ବ ପ୍ରଥମେ ଅଷ୍ଟ୍ରେଲିଅରେ ଯାଇ ଦେଖିଲେ ଯେ, ସେଠାରେ ଘୋଡ଼ା, ଗୋରୁ, ମେଣ୍ଢା, ଛେଳି କିମ୍ବା ପୋଷାମାନିବା ପଶୁ ଆଦୌ ନାହାନ୍ତି। ଦେଖିଲେ, ସେଠାର ଆଦିମ [native] ଜୀବଜନ୍ତୁ ସକଳ ଅପୂର୍ବ ଧରଣର। ଏହି ଅଦ୍ଭୁତ ଜନ୍ତୁମାନଙ୍କ ମଧ୍ୟରେ କାଙ୍ଗାରୁ ବା ଦ୍ୱିଗର୍ଭଜନ୍ତୁ [Kangaroo] ବିଶେଷ ଉଲ୍ଲେଖଯୋଗ୍ୟ। କାଙ୍ଗାରୁ ଚାରି ଗୋଡ଼ରେ କେବେ ଧାଏଁ ନାହିଁ; କିନ୍ତୁ ତାହାର ଖୁବ୍ ଶକ୍ତ ଲାଙ୍ଗୁଳଟି ଏକରକମ spring ଭଳି ବ୍ୟବହାର କରି ପଛ ଗୋଡ଼ରେ ଭରା ଦେଇ ଡେଇଁଥାଏ। ସ୍ତ୍ରୀ-କାଙ୍ଗାରୁ ନିଜ ଶାବକକୁ ତାହାର ସ୍ଫୀତ ଉଦର ବା ମୁଣିରେ [pouch] ଭରତି କରି ଏଣେତେଣେ ବୁଲି ଚାଲି କରେ। କାଙ୍ଗାରୁ-ଚର୍ମ ଅନେକ କାମରେ ଲାଗେ। ଅଷ୍ଟ୍ରେଲିଅର ଅନ୍ୟାନ୍ୟ ଅପୂର୍ବ ପଶୁ:—opossum [କ୍ଷୁଦ୍ରାକାର ସ୍ତନ୍ୟପାୟୀ ପଶୁ]; ହଂସ-ଚଞ୍ଚୁ ବା Duckbill; ବନ୍ୟ-କୁକୁର [Dingo]. Opossumର ଚର୍ମରେ କମ୍ବଳ ତିଆରି ହୁଏ। ପାତିହଂସୀ ପରି duckbill ବି ଲିପ୍ତପଦ [web-footed]. ଏ ପକ୍ଷୀର ଲୋମ ବହଳ ଓ କୋମଳ, ଗଣ୍ଡଦେଶ ସ୍ଫୀତ। ଏହା ଡିମ୍ବ ଦିଏ—ନଈ କୂଳେ ବିବର କରି ରହେ। ବନ୍ୟ-କୁକୁର ବା ଡିଙ୍ଗୋ ଶୃଗାଳ

ଓ ଗଧିଆ ବାଘ ଭଳି ଦଶେ । ଏଠା କୁକୁର ପରି ଭୋକେ ନାହିଁ । ଔପନିବେଶିକମାନେ ଏ ମହାଦେଶକୁ ନୂଆ କରି ଘୋଡ଼ା, ଗୋରୁ, ମେଣ୍ଢା ଓ ଠେକୁଆ[rabbit]ଧରି ଯାଇଥିଲେ । ଏ ସବୁ ଜନ୍ତୁର ସଂଖ୍ୟା ଦିନ୍ ଦିନ ବୃଦ୍ଧି ପାଉଛି । ଏ ମହାଦେଶର ଶୁଷ୍କ ମରୁଭୂମି ପ୍ରଦେଶରେ ଓଟର ବ୍ୟବହାର କରାଯାଏ—ଓଟ ପ୍ରଥମରେ ଭାରତରୁ ଯାଇଥିଲା । ଆଜି କାଲି ଅଷ୍ଟ୍ରେଲିଆରେ ଶଶା ବା ଠେକୁଆର ସଂଖ୍ୟା ଏପରି ଦ୍ରୁତ ଗତିରେ ବଢ଼ିଯାଉଛି ଯେ, ପ୍ରତିବର୍ଷ ଏଜନ୍ତୁ ମାରିବା ପାଇଁ ଲକ୍ଷ ଲକ୍ଷ ଟଙ୍କା ଖରଚ ହେଉଅଛି । ଠେକୁଆମାନେ ଘାସ ଖାଇ ମେଣ୍ଢାମାନଙ୍କର ଗୋଚର ଭୂମିସବୁ ନଷ୍ଟ କରିପକାନ୍ତି । ଏଣୁ ସେମାନଙ୍କ ସଂଖ୍ୟା କମାଇବା ନିମନ୍ତେ ବରାବର ଅଯୋଜନ ଲାଗିଅଛି । ବର୍ତ୍ତମାନ ଅଷ୍ଟ୍ରେଲିଆରେ ଏତେ ଅଧିକ ଘୋଡ଼ା ଅଛନ୍ତି ଯେ, ସେଠାରୁ ପ୍ରଧାନତଃ [New South Walesରୁ] ହଜାର ହଜାର ଘୋଡ଼ା ଜାହାଜରେ ଭାରତକୁ ଅଣାଯାନ୍ତି । ଏହି ଘୋଡ଼ାକୁ Walers କହନ୍ତି । ଅଷ୍ଟ୍ରେଲିଆର ପକ୍ଷୀ:—୧ଦ୍ୱୀପ-ଓଟପକ୍ଷୀ ବା emu—ଛ' ଫୁଟ ଉଚ୍ଚ, ପକ୍ଷହୀନ, ଘୋଡ଼ା ପରି ଚଞ୍ଚଳ ଧାଇଁପାରେ ୨ କୃଷ୍ଣହଂସ—ସମସ୍ତ ହ୍ରଦରେ ଦେଖାଯାଏ ୩ ବୀଣା-ପକ୍ଷୀ [lyre bird] ୪ ପତଙ୍ଗ-ଭୂକ୍ (fly catcher) ୫ regent bird ୬ rifle bird ୭ ପୁଚ୍ଛ-ପକ୍ଷୀ ବା brush-bird ୮ କୁଞ୍ଜ-ପକ୍ଷୀ ବା bower-bird ୯ ବଡ଼ ମାଛ ରଙ୍କା ୧୦ ଶୁଆ ୧୧ ପାରା ।

ପ୍ରଶ୍ନ:—'ଅଷ୍ଟ୍ରେଲିଆର ବୃକ୍ଷ, ଲତା ଓ ଜୀବଜନ୍ତୁ ଅପୂର୍ବ ପ୍ରକୃତିର'—
ଏହା କେତୋଟି ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇ ଦିଅ ।
Eucalyptusର ଉପଯୋଗିତା ବୁଝାଅ ।

# ୭ ଖଣିଜପଦାର୍ଥ ଓ ଆକରଖନନ

ଅଷ୍ଟ୍ରେଲିଆ ଖଣିଜପଦାର୍ଥରେ ପୂର୍ଣ୍ଣ । ୧୮୫୧ ସାଲରେ (ନ୍ୟୁସାଉଥ୍-ଡ୍ୱେଲ୍‌ସ୍‌ରେ) Bathurst ଏବଂ (ଭିକ୍ଟୋରିଆର) Ballarat ଓ Bendigo ନାମକ ସ୍ଥାନରେ ସର୍ବ ପ୍ରଥମେ ସୁନା ଆବିଷ୍କୃତ ହୋଇଥିଲା । ଏହି ଆକସ୍ମିକ ଶୁଭ ସମ୍ବାଦ ପାଇବାକ୍ଷଣି ସେଠାର ଔପନିବେଶିକ-ମାନେ ମହା ଆନନ୍ଦ ଓ ଆଶାରେ ସେହି ସେହି ସ୍ଥାନକୁ ଧାଇଁ ଗଲେ । ଏଇ ଖବର ବିଦ୍ୟୁତ୍ ବେଗରେ ଜଗତର ଅନ୍ୟାନ୍ୟ ଭାଗରେ ଯାଇ ପହଞ୍ଚିଲା । ସଙ୍ଗେ ସଙ୍ଗେ ଅଷ୍ଟ୍ରେଲିଆର, ପୋତାଶ୍ରୟ ଓ ବନ୍ଦରସବୁ ୟୁରୋପ, ଏସିଆ ଓ ଆମେରିକାର ଯାତ୍ରୀ-ଜାହାଜରେ ପୂର୍ଣ୍ଣ ହୋଇଗଲା । ଏ ତିନି ମହାଦେଶର ଲୋକେ ସୁନା ପାଇବା ଆଶାରେ ଅଷ୍ଟ୍ରେଲିଆକୁ ଧାଇଁ ଗଲେ, ପ୍ରଚୁର ପରିମାଣରେ ସୁବର୍ଣ୍ଣ ପାଇଲେ । ଫଳରେ ଅନେକେ ସେଠାରେ ଖୁବ୍ ଧନୀ ହୋଇ ରହିଗଲେ—ଅଷ୍ଟ୍ରେଲିଆର ଲୋକସଂଖ୍ୟା କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ସ୍ୱର୍ଣ୍ଣଗର୍ଭ ଅଷ୍ଟ୍ରେଲିଆ ଏହାହିଁ ଲୋଡ଼ୁଥିଲା—ମନୁଷ୍ୟ ଲୋଡ଼ୁଥିଲା । ଔପନିବେଶିକମାନଙ୍କ ସଂଖ୍ୟା-ବୃଦ୍ଧିରେ ତାହାର ଏଇ ବାସନା ପୂର୍ଣ୍ଣ ହେଲା । ଅଷ୍ଟ୍ରେଲିଆ ନିଜ ବକ୍ଷରେ ବିପୁଳ ସୁବର୍ଣ୍ଣ-ଭଣ୍ଡାର ଧରି, ସୁବର୍ଣ୍ଣ ଅପେକ୍ଷା ଅଧିକ ମୂଲ୍ୟବାନ୍ 'ମନୁଷ୍ୟ'ଙ୍କୁ ନିଜ ନିକଟକୁ ଟାଣି ନେଲା । ସୁନା ଆଣିବାକୁ ଯାଇ ଅନେକ ଲୋକ ସେଠାରେ ପିଲା କୁଟୁମ୍ବ ଧରି, ଘର ଦ୍ୱାର କରି ରହିଲେ—କୃଷକ, ମେଷପାଳକ ଓ ଉଦ୍ୟାନରକ୍ଷକ ହୋଇ ବାସ କଲେ । ଏହି ଔପନିବେଶିକମାନେ ଏବଂ ଏମାନଙ୍କର ବଂଶଧରମାନେହିଁ ମହାନ୍ ଅଷ୍ଟ୍ରେଲୀୟଜାତିର ପ୍ରତିଷ୍ଠାତା, ଏଇ ଜାତି ଆଜି କାଲି ଏଇ ଦ୍ୱୀପ-ମହାଦେଶରେ ଖୁବ୍ ବୃଦ୍ଧି, ବିକାଶ ଲାଭ କରୁଅଛି ।

ବେଣ୍ଡିଗୋ ଓ ବାଲାରାଟ୍‌ରେ ଅନେକ ସୁବର୍ଣ୍ଣ-ଆକର ଦେଖାଯାଏ । ବର୍ତ୍ତମାନ ଅଷ୍ଟ୍ରେଲିଆର ଦକ୍ଷିଣ-ପଶ୍ଚିମକୋଣସ୍ଥ ବଡ଼ ବଡ଼ ସୁନା-ଖଣିରେ

ଦୃଷ୍ଟି । କ୍ୱିନ୍ସ୍‌ଲଣ୍ଡର Rockhampton ସମୀପସ୍ଥ Mt. Morgan ଟି ଗୋଟିଏ ସୁନା-ପାହାଡ଼—ଏହାକୁ "ସୁବର୍ଣ୍ଣ-ଗିରି" ଆଖ୍ୟା ଦିଆ ଯାଇଅଛି ।

ମହାଶୂର ରାଜ୍ୟର କୋଲାର୍‌ସ୍ୱର୍ଣ୍ଣକ୍ଷେତ୍ରରେ, ହଜାର ହଜାର ଫୁଟ ଗଭୀର ଭୂଗର୍ଭରୁ, ଶକ୍ତ ପ୍ରସ୍ତରରୁ ସୁନା ବାହାର କରାଯାଏ । ଏତେ ଗଭୀର ଖଣି ଖୋଳି, ପଥର ଭାଙ୍ଗି, ଉପରକୁ ସୁନା ଉଠାଇ ଆଣି ଚୂର୍ଣ୍ଣ କରିବା ସକାଶେ ନାନା କଳ କାରଖାନା ବ୍ୟବହୃତ ହୁଏ, ବହୁ ଧନ ବ୍ୟୟ ହୁଏ । ଅଷ୍ଟ୍ରେଲିଆରେ କିନ୍ତୁ ଏ ଅସୁବିଧା ଘଟି ନ ଥିଲା । ଆଗେ ଏ ମହାଦେଶର ଭୂମି ଉପରେ, ନଦୀ ଗର୍ଭରେ ସୁନା ପଡ଼ି ରହି ଥିଲୁଥାଏ —ଅନେକ ସ୍ଥାନରେ ସ୍ତୂପାକାରରେ ବି ଦେଖା ଯାଉ ଥାଏ । ଲୋକେ ନଈର ବାଲି ବା ପଙ୍କ ଧୋଇ ସୁନା ବାହାର କରି ପାରୁ ଥାନ୍ତି । ସୁନା ପାଇବା ଏତେକ ଖୁବ୍ ସହଜ ଥିଲା । ଭୂମିର ଉପରଭାଗରୁ ସୁବର୍ଣ୍ଣ ସଂଗୃହୀତ ହେବା ପରେ ଖଣି ଖୋଳିବା ଆରମ୍ଭ ହେଲା । ବର୍ତ୍ତମାନ ଭୂମିର ଉପରି-ଭାଗରେ ଆଉ ସୁନା ମିଳେ ନାହିଁ । ଅନେକ ସ୍ଥାନରେ ଅତି ଗଭୀର, ବ୍ୟୟସାପେକ୍ଷ ଆକର ଖନନ କରା ଯାଉ ଥାଏ । ଭାରତ ଅପେକ୍ଷା ପାଞ୍ଚ ଗୁଣ ଅଧିକ ସୁନା ଅଷ୍ଟ୍ରେଲିଆରେ ଆଜି କାଲି ଆଦାୟ କରା ହୁଏ ।

ନ୍ୟୁ ସାଉଥ୍ ଉଏଲ୍‌ସର ପଶ୍ଚିମବର୍ତ୍ତୀ Broken Hill ରେ ଅନେକ ବଡ଼ ବଡ଼ ଅଭୁତ ଖଣି ଦେଖାଯାଏ । ଏ ସମସ୍ତ ଖଣିରୁ ପ୍ରଚୁର ପରିମାଣରେ ଟିଣ, ରୁପା, ସୀସା ଓ ଦସ୍ତା ବାହାର କରା ହୁଏ । Broken Hill ର ପୂର୍ବଭାଗରେ ବଡ଼ ବଡ ତମ୍ବା-ଖଣି ଖୋଲା ହେଉଅଛି । Mt Morgan ରୁ ସୁନା ଅପେକ୍ଷା ଅଧିକ ତମ୍ବା ବର୍ତ୍ତମାନ ବାହାର କରାଯାଉଅଛି । ପ୍ରଶାନ୍ତୋପକୂଳ ନିକଟରେ କେତୋଟି ଶ୍ରେଷ୍ଠ କୋଇଲା-କ୍ଷେତ୍ର ଅଛି । Sydney ସମୀପସ୍ଥ କୋଇଲା— କ୍ଷେତ୍ରଟି ଅତି ପ୍ରଧାନ ।

ପ୍ରଶ୍ନ:— ଅଷ୍ଟ୍ରେଲିଆର ଲୋକସଂଖ୍ୟା କହେତୁ ବୃଦ୍ଧି ପାଇଲା ?
ଏ ମହାଦେଶରେ ଆଗେ ସୁନା ପାଇବା ବଡ଼ ସହଜ ଥିଲା କପରି ?
ଏଠାର କେଉଁ କେଉଁ ଅଞ୍ଚଳରେ ସୁନା ମିଳେ ?

——○⁕○⁕○——

## ୮ ରାଜନୈତିକ ବିଭାଗ

ଅଷ୍ଟ୍ରେଲିଆ ଛ'ଗୋଟି ଭାଗରେ (states) ବିଭକ୍ତ:—ନ୍ୟୁସାଉଥ୍ ଓ୍ୱେଲସ୍; ଭିକ୍ଟୋରିଆ; କ୍ୱିନ୍ସଲଣ୍ଡ୍; ଦକ୍ଷିଣ-ଅଷ୍ଟ୍ରେଲିଆ; ପଶ୍ଚିମ-ଅଷ୍ଟ୍ରେଲିଆ ଉତ୍ତର ରାଜ୍ୟ (Northern Territory).

ନ୍ୟୁ ସାଉଥ୍ ଓ୍ୱେଲସ୍:— ଏହା ହେଉଛି ଅଷ୍ଟ୍ରେଲିଆର ଅଦ୍ଧ ବା ମାତୃ ଉପନିବେଶ । ଡିଭାଇଡିଙ୍ଗ୍ ପର୍ବତମାଳା ଏହା ମଧ୍ୟରେ ବିସ୍ତୃତ । ଏହି ଉଚ୍ଚଭୂମି ଓ ସାଗର ମଧ୍ୟବର୍ତ୍ତୀ ଭାଗଟି ଖୁବ ଉର୍ବର, କ୍ଷୁଦ୍ର-ନଦୀ-ପୂର୍ଣ୍ଣ । ଭିତର ଭାଗରେ ତୃଣଭୂମି (savannah) ପ୍ରସାରିତ, ଏହା ଡାର୍ଲିଂ ଓ ମାରେର ଅନ୍ୟାନ୍ୟ ପୋଷକନଦୀ ଦ୍ୱାରା ପ୍ଲାବିତ । ଏ ତୃଣ-ପ୍ରଦେଶରେ ବେଶି ଗହମ ଆଦାୟ ହୁଏ, ଅନେକ ମେଣ୍ଢାପଲ ଚରନ୍ତି । ମେଷପାଳନ ଯୋଗେ ନ୍ୟୁ ସାଉଥ୍ ଓ୍ୱେଲସ୍ ହେଉଛି ପୃଥିବୀର ପ୍ରଧାନ ଲୋମୋତ୍ପାଦକ ଦେଶ । ସିଡ୍‌ନି ଏ ଦେଶର ସର୍ବ ପ୍ରଧାନ ନଗର ଓ ସାଗର-ବନ୍ଦର । ଏ ନଗରରୁ ଲୋମ, ଘନୀଭୂତ ମାଂସ, ଗହମ ଓ ଘୋଡ଼ା ରପ୍ତାନି କରାଯାଏ । ଏଠାର ରାସ୍ତା ସବୁ ଖୁବ୍ ଓସାର । ପ୍ରାସାଦ, ପାର୍କ ଓ ଉଦ୍ୟାନ ସବୁ ଅତି ସୁନ୍ଦର । ଏଣୁ ଏ ନଗରକୁ କହନ୍ତି, "The Queen of the South". ଏହାର କିଛି ଉତ୍ତରରେ ନ୍ୟୁ କ୍ୟାସଲ୍ ବନ୍ଦର— ପ୍ରଧାନ କୋଇଲା-ଖନନ-କେନ୍ଦ୍ର । ଏଠାରେ ଲୋମ-ବ୍ୟବସାୟ ବି ଚଳେ ।

ଭିକ୍ଟୋରିଆ:— ନ୍ୟୁସାଉଥ୍‌ୱେଲ୍‌ସ ଦକ୍ଷିଣ-ପୂର୍ବ କୋଣରେ, ମାରେ ନଦୀର ଦକ୍ଷିଣରେ ଅବସ୍ଥିତ। The Australian Alps ଏ ଦେଶରେ ପୂର୍ବରୁ ପଶ୍ଚିମ ଯାଏ ବିସ୍ତୃତ। ଭିକ୍ଟୋରିଆ ସ୍ୱର୍ଣ୍ଣଖଣି ଯୋଗେ ପ୍ରସିଦ୍ଧ। ଏଠାରେ ଗହମ, ଦ୍ରାକ୍ଷା ଓ ନାନା ପ୍ରକାର ଫଳ ଉତ୍ପନ୍ନ ହୁଏ, ଅନେକ ମେଷ, ଗୋରୁ ଓ ଅଶ୍ୱ ପାଳିତ ହୁଅନ୍ତି। ମେଲ୍‌ବୋର୍ଣ୍ଣ ଅଷ୍ଟ୍ରେଲିଆର ବୃହତ୍ତମ ନଗର, ଅନ୍ୟତମ ପ୍ରଧାନ ବନ୍ଦର। ବର୍ତ୍ତମାନ ଏଠାରେ ଅନେକ ବଡ଼ ବଡ଼ ପ୍ରାସାଦ ଦେଖାଯାଏ। ଏଠାରୁ ମଧ୍ୟ କ୍ଷେତ୍ର ଓ ଗୋଚରଭୂମିର ଉତ୍ପନ୍ନ ଦ୍ରବ୍ୟସକଳ ରପ୍ତାନି କରାହୁଏ। ଭିକ୍ଟୋରିଆର ବେଣ୍ଡିଗୋ ଓ ବାଲାରାଟ ଆକର-ଖନନରେ ପ୍ରସିଦ୍ଧ।

କୁଇନ୍‌ସଲଣ୍ଡ:— ଏହା ଅଷ୍ଟ୍ରେଲିଆର ଉତ୍ତର-ପୂର୍ବ ଭାଗକୁ ମାଡ଼ି ବସିଛି। ବିଷୁବରେଖାର ନିକଟତର ହୋଇଥିବାରୁ ଏଠା ଜଳବାୟୁ ଅପେକ୍ଷାକୃତ ଗରମ। ଏହାର ଅତି ଉତ୍ତର ପ୍ରଦେଶକୁ ମୌସୁମି-ପୁଷ୍ଟ; ଏଣୁ ସେଠାରେ ଭାରତୀୟ ଶସ୍ୟ, ଫଳାଦି ଉତ୍ପନ୍ନ କରାଯାଇପାରେ। ଏ ଦେଶର ସର୍ବତ୍ର ଗହମ, ଆଖୁ, କପା ଓ କଦଳୀ ଜାତ ହୁଏ ଏବଂ ଏଠାରେ ସୁନା, ରୁପା, କୋଇଲା ଓ ତମ୍ବାର ଅନେକ ଖଣି ଦେଖାଯାଏ। ଏଠାରେ ଉଚ୍ଚଭୂମିର୍ ପର୍ବତଶ୍ରେଣୀକି "The Darling Downs" ବୋଲାଯାଏ। ଏହାର ଢାଲୁ ଭାଗରେ ଲକ୍ଷ ଲକ୍ଷ ମେଣ୍ଢା ଚରୁଥାନ୍ତି। ଏ ଦେଶର ପ୍ରଧାନ ସହର ଓ ବନ୍ଦର ବ୍ରିସ୍‌ବେନ୍। ଏଠାରୁ ଗହମ, ଲୋମ, ମେଷ-ମାଂସ, ଗୋମାଂସ ଓ ଲହୁଣୀ ବିଦେଶକୁ ପଠାଯାଏ। Brisbaneର ଉତ୍ତରରେ ଆଉ କେତେ ବନ୍ଦର ଅଛି ମାନଚିତ୍ର ଦେଖି କହ।

ଦକ୍ଷିଣ-ଅଷ୍ଟ୍ରେଲିଆ:— ଏହାର ଉତ୍ତର ଭାଗକୁ କେନ୍ଦ୍ରୀୟ ମରୁଭୂମି ମଧ୍ୟରେ ପ୍ରବେଶ କରିଅଛି। ଏଠାରେ ପ୍ରକୃତ ନଦୀ ଓ ସହର ନାହିଁ। ଏହାର ଦକ୍ଷିଣାଞ୍ଚଳକୁ ମାତ୍ର ଫଳବତୀ। Adelaide ଏଠାର ପ୍ରଧାନ ସହର। କେତୋଟି ରେଳପଥ ଏଠାରୁ ବାହାର ଦେଶରେ ଚାଲିଛି

ଯାଇ ଅଛି ଏବଂ ତାର-ଖବର-ମାର୍ଗ (telegraph line) ଏଠାରେ ଆରମ୍ଭ ହୋଇ ମହାଦେଶର ଦକ୍ଷିଣରୁ ଉତ୍ତର (Port Darwin) ଯାଏଁ ଚାଲିଅଛି । Adelaide ରେ ଏହି ତାର ସାଗର-ତଳ ତାର (under-sea wires) ସହିତ ସଂଯୁକ୍ତ ହୋଇ ସିଙ୍ଗାପୁର ଓ ମାନ୍ଦ୍ରାଜକୁ ଆସିଅଛି । ଏଇ ସହର ନିକଟରେ ଗୋଟିଏ ମଜ୍‌ବୁତ୍ ପୋତାଶ୍ରୟ ନିର୍ମିତ ହୋଇଅଛି ।

ପଶ୍ଚିମ-ଅଷ୍ଟ୍ରେଲିଆ:— ମହାଦେଶର ପ୍ରାୟ ଏକ-ତୃତୀୟାଂଶ ଏ ଦେଶରେ ଆବୃତ । ବର୍ତ୍ତମାନ ଏହାର ଦକ୍ଷିଣ-ପଶ୍ଚିମ କୋଣଟି ଖୁବ୍ ପ୍ରାଧାନ୍ୟ ଲାଭ କରିଅଛି—ଏ କୋଣର ଜଳବାୟୁ ସମଶୀତୋଷ୍ଣ, ଏଠାରେ ଭଲ ବର୍ଷା ହୁଏ । ଗହମକ୍ଷେତ୍ର, ଚରଭୂମି ଓ ଦ୍ରାକ୍ଷାବଗିଚା ଅନେକ ଦେଖାଯାଏ । ଏ ଦେଶର ଅନ୍ୟାନ୍ୟ ଅଞ୍ଚଳରେ କମ୍ ଲୋକ ଅଛନ୍ତି । ଦକ୍ଷିଣ-ପଶ୍ଚିମ କୋଣରେ ବେଶି ବଣ ଓ ଖଣି ଅଛି । ପ୍ରଧାନ ସହର Perth ସ୍ୱାନନଦୀ ଉପରେ ଅବସ୍ଥିତ । ନିକଟସ୍ଥ Fremantleରେ ଗୋଟିଏ ସୁରମ୍ୟ କୃତ୍ରିମ ପୋତାଶ୍ରୟ ଅଛି । କିନ୍ତୁ Albany ହେଉଛି ସର୍ବୋତ୍କୃଷ୍ଟ ପୋତାଶ୍ରୟ, କୋଇଲା-ଷ୍ଟେସନ । ଏହା ରେଲ-ପଥରେ ପର୍ଥ ସହିତ ସଂଯୁକ୍ତ । Coolgardie ଓ Kalgoorlie ପ୍ରଧାନ ଆକର-ଖନନ-କେନ୍ଦ୍ର ।

ଉତ୍ତର-ରାଜ୍ୟ:— ଏଠାରେ ଅନେକ ମୌସୁମି-ବୃଷ୍ଟି ପୁଷ୍ଟ ନଦୀ ପ୍ରବାହିତ, ମନୋହର ପୋତାଶ୍ରୟ ଅବସ୍ଥିତ । Palmerston ବା Port Darwin ଏଠାର ବିଶେଷ ଉଲ୍ଲେଖଯୋଗ୍ୟ ପୋତାଶ୍ରୟ । ଏ ରାଜ୍ୟର ମଧ୍ୟ ଭାଗଟି ଏକ ମାଳଭୂମି—ଶୁଷ୍କ ଓ ବାଲୁକାମୟ । ଏହି ପ୍ରକାଣ୍ଡ ଦେଶରେ ଅତ୍ୟଳ୍ପ ଲୋକେ ମାତ୍ର ବାସ କରନ୍ତି । ଏହାର ପ୍ରଧାନ ନଗର Darwin.

ଟାସ୍‌ମେନିଆ:— ଏ ଦ୍ୱୀପଟି ସିଂହଳଠାରୁ କିଛି ବଡ଼ । ଏହାର

ମଧ୍ୟଭାଗସ୍ଥ ପାର୍ବତ୍ୟ ଓ ଉପତ୍ୟକାପୂର୍ଣ୍ଣ ଗୋଟିଏ ମାଳଭୂମି । ଆର୍ଦ୍ର ପଶ୍ଚିମ-ପବନ ଏଠାକୁ ବେଶି ବର୍ଷା ବହି ଆଣେ । ଏଠାର ଜଳବାୟୁ ଖୁବ୍ ଶୀତଳ । Launceston ଓ Hobart ଏଠାର ପ୍ରଧାନ ସହର ଓ ସମୁଦ୍ର-ବନ୍ଦର । ଏ ଦ୍ବୀପରେ ଗହମ ଜନ୍ମେ । ଏଠାରୁ ଇଂଲଣ୍ଡକୁ ଆଚ--ଫଳ ପଠାଯାଏ

ପ୍ରଶ୍ନ:— ସିଡ୍‌ନି ସହରକୁ "The Queen of the South" କହନ୍ତି କାହିଁକି ?

Adelaide Madras ସହିତ କିପରି ସଂଯୁକ୍ତ ହୋଇଅଛି ?

ଅଷ୍ଟ୍ରେଲିଆର କେଉଁ ରାଜ୍ୟରେ ଅଧିକ ଲୋକ ବାସକରନ୍ତି ? କାହିଁକି ବାସକରନ୍ତି ?

---

## ୯ ଶାସନ ପ୍ରଣାଳୀ

ଗତ ପରିଚ୍ଛେଦରେ ଅଷ୍ଟ୍ରେଲିଆର ଛ ଗୋଟି ରାଜ୍ୟ ବା ରାଜନୈତିକ-ବିଭାଗ ସମ୍ବନ୍ଧରେ ପଢ଼ି ସାରିଛ । ୧୯୦୧ ଜାନୁଏରୀ ପ୍ରଥମ ଦିନ ଏ ଛ' ରାଜ୍ୟ ମିଳିତ ହୋଇ ଜଣେ ଗଭର୍ଣ୍ଣର-ଜେନେରଲ୍(ବଡ଼ଲାଟ)ଙ୍କ ଦ୍ୱାରା ଶାସିତ ହେବାକୁ ଲାଗିଲା । ଏହି ରାଜ୍ୟ-ମିଶ୍ରଣକୁ କହନ୍ତି "Common-wealth of Australia"ବା "Federal Commonwealth." ଅଥଚ ପ୍ରତ୍ୟେକ ରାଜ୍ୟ ନିଜର ଆଭ୍ୟନ୍ତରୀଣ ବିଷୟ ନିଜେ ବୁଝେ, Commonwealth ବାହାର ବିଷୟ ଅର୍ଥାତ୍ କୌଣସି ବିଦେଶୀ ସରକାର ସଙ୍ଗେ ଯୁଦ୍ଧ ବା ସନ୍ଧି କିମ୍ବା ବାଣିଜ୍ୟାଦି ବିଷୟ ପରିଚାଳନା କରି ଥାଏ ।

ନ୍ୟୁ ସାଉଥ୍ ୱେଲସରେ, ସିଡ୍‌ନିଠାରୁ ପ୍ରାୟ ଏକ ଶତ ମାଇଲ ଦୂରରେ ସମୂହ-ଶାସନ ବା Commonwealthର ନୂତନ ରାଜଧାନୀ

ବସାଇବାର ପ୍ରଥମରେ ସ୍ଥିର କରା ଯାଇଥିଲା । ଏ ପ୍ରସ୍ତାବ କିନ୍ତୁ ସ୍ଥଗିତ ରହିଲା । ୧୯୦୯ ସାଲରେ ସିଡ୍‌ନିର ଦକ୍ଷିଣ-ପଶ୍ଚିମ-ସ୍ଥିତ Canbera ନାମକ ନଗର ଫେଡ଼େରଲ୍-ରାଜଧାନୀରୂପେ ନିର୍ବାଚିତ ହେଲା ।

ପ୍ରଶ୍ନ:— ଅଷ୍ଟ୍ରେଲିଆର ସମସ୍ତ ରାଜ୍ୟ କେବେ କେଉଁ ନାମରେ ମିଳିତ ହେଲା ?

——୦:○:୦——

## ନ୍ୟୁଜିଲଣ୍ଡ

### ୧ ଉପକୂଳ ଓ ଜଳବାୟୁ

'Zealand' ର ଅର୍ଥ 'sea-land' ବା 'ସାଗର-ଭୂମି ।' ଡଚ୍ ଅଧିବାସୀମାନେ ଏହାକୁ ଏଇ ନାମ ଦେଇଥିଲେ । ନ୍ୟୁ ଜିଲଣ୍ଡ, ଉତ୍ତର ଓ ଦକ୍ଷିଣ ଦ୍ୱୀପରେ ଗଠିତ — ଏଇ ଦୁଇ ଛୋଟ ଦ୍ୱୀପ କୁକ୍ ପ୍ରଣାଳୀ-ଦ୍ୱାରା ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଅଛି । ନ୍ୟୁ ଜିଲଣ୍ଡ୍ ଅଷ୍ଟ୍ରେଲିଆର କୁଇନ୍ସଲଣ୍ଡ୍ ବା ନ୍ୟୁ ସାଉଥ୍ ଓ୍ୱେଲସ୍ ଠାରୁ ଛୋଟ । ଏହାର ଉପକୂଳ-ସୀମା ଭଗ୍ନ । ଏହାର କୌଣସି ଅଂଶ ଲବଣ-ଜଳ ଠାରୁ ଦୂରରେ ଥିବାର ଦେଖା ଯାଏ ନାହିଁ । ଦକ୍ଷିଣ ପଶ୍ଚିମ ଉପକୂଳଟି ଅଧିକ ଭଗ୍ନ ଓ ଦ୍ୱୀପପୂର୍ଣ୍ଣ । ଅଥଚ ଏଠାରେ ସୁନ୍ଦର ପୋତାଶ୍ରୟ ନାହିଁ; କାରଣ ପୃଷ୍ଠ-ଭାଗରେ ଉଚ୍ଚ ପର୍ବତଶ୍ରେଣୀ ଅବସ୍ଥିତ । North Island ର ଉତ୍ତର-ପଶ୍ଚିମ ଉପଦ୍ୱୀପଟି ମଧ୍ୟ ବେଶି ଭଙ୍ଗା, ଅଥଚ ଚେପ୍ଟା । ଏଇ ଉପଦ୍ୱୀପ ଏକ ସଂକୀର୍ଣ୍ଣ ସଂଯୋଜକ ଦ୍ୱାରା ଉତ୍ତର ଦ୍ୱୀପ ସହିତ ସଂଯୁକ୍ତ ହୋଇ-ଅଛି । ଏଇ ସଙ୍ଗମ ସ୍ଥାନରେ ଗୋଟିଏ ସୁନ୍ଦର ବନ୍ଦର ଦେଖା ଯାଏ । ଅବସ୍ଥିତିରେ ବ୍ରିଟେନ୍ ସହିତ ନ୍ୟୁ ଜିଲଣ୍ଡ୍‌ର ଖୁବ୍ ସାଦୃଶ୍ୟ ଲକ୍ଷିତ ହୁଏ । ବଡ଼ ମାନଚିତ୍ରରେ ଉଭୟ ଦ୍ୱୀପପୁଞ୍ଜର ସ୍ଥିତି (position) ନିର୍ଦ୍ଦେଶ କର ।

ନ୍ୟୁ ଜିଲଣ୍ଡ୍‌ର ଉଚ୍ଚଭୂମି ସଳଖ ଭାବରେ ଦକ୍ଷିଣ-ପଶ୍ଚିମ କୋଣରୁ

ଉତ୍ତର-ପୂର୍ବ କୋଣ ପର୍ଯ୍ୟନ୍ତ ବିସ୍ତୃତ ହୋଇ ଅଛି । South Islandର ପର୍ବତମାଳା ଖୁବ୍ ଉଚ୍ଚ ଏବଂ ପଶ୍ଚିମୋପକୂଳକୁ ଲାଗି ରହିଅଛି । ଏ ପର୍ବତଶ୍ରେଣୀକୁ 'Southern Alps' କହାଯାଏ; କାରଣ (ୟୁରୋପର Alps ଭଳି) ଏଠାର ଉଚ୍ଚତମ ଗିରିଶୃଙ୍ଗସକଳ ବରଫାଚ୍ଛନ୍ନ ରହିଥାଏ ଏବଂ ଉପତ୍ୟକାରେ ଅନେକ ବରଫ-କ୍ଷେତ୍ର ଦେଖାଯାଏ । North Island ରେ ତିନି ଗୋଟି ଉଚ୍ଚ ଆଗ୍ନେୟଗିରି ଅଛି— ଏଥି ମଧ୍ୟରୁ ଦୁଇଟି କ୍ରିୟାଶୀଳ । ଏଠାରେ କେବେ କେବେ ଭୂମିକମ୍ପ ହୁଏ । ଏଠାର ଅଧିକ ଭାଗ ଆଗ୍ନେୟଗିରି-ନିର୍ଗତ ଭସ୍ମ ଓ ତରଳ-ପାହାଡ଼ର ଭଗ୍ନଖଣ୍ଡରେ ଆବୃତ ରହେ । ଏ ଭାଗରେ Taupo ହ୍ରଦ ଅବସ୍ଥିତ ।

ନ୍ୟୁଜିଲଣ୍ଡ୍ ବିଷୁବରେଖା ଠାରୁ ବହୁ ଦୂରରେ ଅଛି ଏବଂ ଏହାର କୌଣସି ଅଂଶ ସମୁଦ୍ର ଠାରୁ ଦୂର ନୁହେଁ । ଏଣୁ ଏଠାର ଜଳବାୟୁ ଖୁବ୍ ଶୀତଳ । ଏହା ଭାରତବର୍ଷ ଅପେକ୍ଷା ଅଧିକ ଶୀତଳ ଏବଂ ବ୍ରିଟିଷ୍ ଦ୍ୱୀପପୁଞ୍ଜ ଅପେକ୍ଷା ଅଧିକ ଉଷ୍ଣ । ନ୍ୟୁଜିଲଣ୍ଡ୍ର କୌଣସି ଅଞ୍ଚଳ ଶୁଷ୍କ, ନୀରସ ନୁହେଁ— ପ୍ରାୟ ପ୍ରତ୍ୟେକ ଭାଗରେ ନଦୀ ଦେଖାଯାଏ । ଏଥିରୁ ବେଶ୍ ବୁଝାଯାଏ ଯେ, ଏହି ଦ୍ୱୀପପୁଞ୍ଜରେ ଢେର୍ ବର୍ଷା ହୁଏ । ଏଠାର ବାୟୁ ଆର୍ଦ୍ର ଥିବାରୁ ବୃକ୍ଷଲତାଦି ସହଜରେ ବଢ଼ିପାରେ । ଭାରତର ପଶ୍ଚିମ ଘାଟ ପରି, Southern Alps ରେ ପ୍ରବଳ ବୃଷ୍ଟି ହୋଇ ଥାଏ । ପ୍ରଚୁର ବର୍ଷା ଯୋଗେ ଏଠାର ନଦୀ ସବୁ କେବେ ଶୁଖି ଯାଏ ନାହିଁ । ତେବେ ନଦୀ ସବୁ ଖୁବ୍ ଛୋଟ ଓ ଚଞ୍ଚଳଗତି; ସୁତରାଂ ସେତେ ନାବ୍ୟ ନୁହେଁ ।

North Island ଟି Kauri pine ଜଙ୍ଗଲରେ ଆବୃତ । ଏହା ଦେବଦାରୁ ଜାତିର ଏକ ରକମ ଗଛ । ଏ ଗଛ ପ୍ରାୟ ଦୁଇଶତ ଫୁଟ ଉଚ୍ଚ ହୋଇଥାଏ । ଏହାର ଗଣ୍ଡି ଖୁବ୍ ମୂଲ୍ୟବାନ୍ । ଏ ଗଛର ଅଠାରୁ ଭର୍ଣିସ୍ (Varnish) ତିଆରି ହୁଏ । ନ୍ୟୁଜିଲଣ୍ଡ୍ର ପ୍ରାୟ

ଏକତୃତୀୟାଂଶ ଅରଣ୍ୟାଚ୍ଛନ୍ନ । ଏଠାରେ ଗହମ, ଯବ ଓ oat ଉତ୍ପନ୍ନ ହୁଏ । ଲୋମ ଏ ଦ୍ୱୀପପୁଞ୍ଜର ପ୍ରଧାନ ଉତ୍ପନ୍ନଦ୍ରବ୍ୟ ।

ପ୍ରଶ୍ନ:— ନ୍ୟୁଜିଲଣ୍ଡ୍‌ର ଦକ୍ଷିଣ ପର୍ବତମାଳାକୁ 'Southern Alps' ଆଖ୍ୟା ଦିଆ ଯାଇଛି କାହିଁକି ?

ଏ ଦ୍ୱୀପପୁଞ୍ଜର ଜଳବାୟୁ କହେଁଭୁ ଥଣ୍ଡା ?

—○:୦:○—

## ୨ ଖନିଜଦ୍ରବ୍ୟ ଓ ବ୍ୟବସାୟ

ନ୍ୟୁ ଜିଲଣ୍ଡ୍‌ରେ ଅନେକ ସୁନା ଓ କୋଇଲା ଖଣି ଏବଂ ତୈଳକୂପ (oil wells) ଦେଖା ଯାଏ । ଆଗ୍ନେୟଗିରି ନିକଟରେ ଗନ୍ଧକ ମିଳେ । Taupo ହ୍ରଦର ଉତ୍ତର ପୂର୍ବ ଦିଗରେ ଛୋଟ ଛୋଟ ଗୁଡ଼ାଏ ତପ୍ତ-ଜଳ ହ୍ରଦ ଅଛି । ଗଂଜାମର 'ତପ୍ତପାଣି' ଭଳି, ଏ ସମସ୍ତ ହ୍ରଦ ଓ ଝରଣା ଗନ୍ଧକପୂର୍ଣ୍ଣ । ବାତରୋଗୀ ଓ ଚର୍ମରୋଗୀମାନେ ଏ ଜଳରେ ସ୍ନାନ କରି ଥାନ୍ତି ।

ପୂର୍ବ ଅଧ୍ୟାୟରେ ପଢ଼ିଛ, ନ୍ୟୁ ଜିଲଣ୍ଡ୍‌ର ପ୍ରାୟ ଏକତୃତୀୟାଂଶ ଅରଣ୍ୟାବୃତ । ଏଣୁ ଏଠାର ପ୍ରଧାନ ବ୍ୟବସାୟ କାଠ କରିବା । ଉଚ୍ଚ ପର୍ବତଶ୍ରେଣୀ ଛଡ଼ା, ନ୍ୟୁ ଜିଲଣ୍ଡ୍‌ର ସମସ୍ତ ଭାଗ କୃଷି ଓ ଗୋଚାରଣର ବିଶେଷ ଉପଯୋଗୀ । ଏଠାରେ ଆଦୌ ମରୁଭୂମି ନାହିଁ । ଅନେକ କୃଷକ ଗୋଚର-ଭୂମିରେ ମେଣ୍ଢା ଓ ଗୋରୁ ଚରାନ୍ତି । ଏଠାର ମାଂସ-ବ୍ୟବସାୟିମାନେ ବରଫ-ମଡ଼ା ମାଂସ ୟୁରୋପକୁ ପଠାନ୍ତି । କାନାଡ଼ା ଭଳି ନ୍ୟୁ ଜିଲଣ୍ଡ୍ ମଧ୍ୟ ଗ୍ରେଟ୍ ବ୍ରିଟେନ୍‌କୁ ଲହୁଣୀ ଓ ଛେନା ପଠାଇ ଥାଏ ।

ନ୍ୟୁ ଜିଲଣ୍ଡ୍‌ର ଜନସଂଖ୍ୟା ଖୁବ୍ କମ୍ । ସମଗ୍ର ନ୍ୟୁ ଜିଲଣ୍ଡ୍‌ରେ ଯେତେ ଲୋକ ଦେଖାଯାନ୍ତି, ସେମାନଙ୍କର ଦୁଇ ଗୁଣ ବା ତତୋଧିକ ଲୋକ ବୋମ୍ବାଇରେ ବାସ କରନ୍ତି । ପ୍ରଧାନ ସହରସବୁ ପୋତାଶ୍ରୟ

ଚତୁର୍ଦ୍ଦିଗରେ ନିର୍ମିତ ହୋଇଅଛି । ଔପନିବେଶିକମାନେ ଯିବା ଆଗରୁ ସେଠାରେ ସହର ଆଦୌ ନ ଥିଲା । Auckland ଏଠାର ପ୍ରଧାନ ସମୁଦ୍ର-ବନ୍ଦର । Wellingtonରେ ସୁନ୍ଦର ଘୋଡାଶ୍ରଯ୍ଯୁକ୍ତ ଏ ଅଛି । ଏ ସହରଟି ନ୍ୟୁ ଜିଲଣ୍ଡର ରାଜଧାନୀ—ଏଠାରେ Dominion Parliament ବସେ, Viceroy ବାସ କରନ୍ତି । Christchurchରେ ଲୋମ ଓ ମାଂସର କାରବାର ହୁଏ । ଏଠାର ଅନ୍ୟାନ୍ୟ ସହର:— Dunedin ଓ Invercargill ।

ପ୍ରଶ୍ନ:— ନ୍ୟୁ ଜିଲଣ୍ଡରେ କି କି ବ୍ୟବସାୟ ହୁଏ ଏବଂ କି କି ଖଣିଜ ପଦାର୍ଥ ମିଳେ ?

——○ଃ○ଃ○——

# ପଲିନିସିଆ

'Polynesia' ଶବ୍ଦର ଅର୍ଥ 'ବହୁ ଦ୍ୱୀପ' (Many Islands). ଏହାକୁ 'ପ୍ରଶାନ୍ତ ଦ୍ୱୀପପୁଞ୍ଜ' (Pacific Islands)ମଧ୍ୟ ବୋଲାଯାଏ । ଅଷ୍ଟ୍ରେଲିଆ ଓ ନ୍ୟୁ ଜିଲଣ୍ଡର ଉତ୍ତର ପୂର୍ବ ଦିଗରେ ଏହି ଦ୍ୱୀପମାଳା ବିକ୍ଷିପ୍ତ ହୋଇ ରହିଅଛି । ଏ ସମସ୍ତ ଛୋଟ ଦ୍ୱୀପ ପ୍ରବାଳ କୀଟରେ ଗଠିତ କିମ୍ବା ଆଗ୍ନେୟଗିରି ରୂପେ ଉତ୍ଥିତ । ଏଠାରେ ଅତ୍ୟଳ୍ପ ବୃକ୍ଷଲତା, ଜୀବଜନ୍ତୁ ଦେଖାଯାନ୍ତି । ପଲିନିସିଆ ବିଷୁବରେଖାର ଉଭୟ ପାର୍ଶ୍ୱରେ ଅର୍ଥାତ୍ ଗ୍ରୀଷ୍ମ ମଣ୍ଡଳରେ ଅବସ୍ଥିତ । ଏଣୁ ଏଠାର ଜଳବାୟୁ ଖୁବ୍ ଗରମ ଓ ଆର୍ଦ୍ର । ଏଠାରେ ନଡ଼ିଆ, କଦଳୀ ଓ bread-fruit ଫଳେ । ଏ ସମସ୍ତ ଦ୍ୱୀପର ଲୋକେ ପ୍ରଧାନତଃ ମାଛ ଖାଇ ବଞ୍ଚନ୍ତି । କେତୋଟି ବଡ଼ ଦ୍ୱୀପରେ ମକା, ଧାନ, କପା ଓ ଆଖୁ ଆଦାୟ କରାଯାଏ । ଏ ସବୁ ୟୁରୋପିୟନ୍ମାନଙ୍କ ଦ୍ୱାରା ଆମଦାନି ହୋଇଥିଲା ।

ପଲିନେସିଆର ଅନେକ ଦ୍ୱୀପ ବ୍ରିଟିଷ୍ ସାମ୍ରାଜ୍ୟର ଅନ୍ତର୍ଗତ— ଏଥିମଧ୍ୟରେ ଫିଜି, ଫ୍ରେଣ୍ଡ୍‌ଲି ଓ ସୋସାଇଟି ସର୍ବ ପ୍ରଧାନ । Fiji ର Suva ଗୋଟିଏ ପ୍ରଧାନ ପୋତାଶ୍ରୟ । Hawaii ବା Sandwich Islands ଯୁକ୍ତରାଜ୍ୟାଧୀନ ।

ପ୍ରଶ୍ନ:— 'ପଲିନେସିଆ' କାହାକୁ କହନ୍ତି ?

—୦:୦:୦—

ଚତୁର୍ଥ ଭାଗ

# ପ୍ରାକୃତିକ ଭୂଭାଗ

## ୧ ସୂର୍ଯ୍ୟର ଗତି ଓ ଉଚ୍ଚତା

——୦:୦:୦——

ଗତବର୍ଷ ମଧ୍ୟାହ୍ନ-ଛାୟା, ମଧ୍ୟାହ୍ନ-ସୂର୍ଯ୍ୟର ଉଚ୍ଚତା, ସୂର୍ଯ୍ୟର ଦୃଶ୍ୟମାନ ଗତି ଓ ଦିବସର ପରିମାଣ ସମ୍ବନ୍ଧରେ ଯାହା ପଢ଼ିଥିଲ, ଏଠାରେ ତାହାର ପୁନରା-ବୃତ୍ତି କରାଯିବ । ଏହି ପରିଚ୍ଛେଦ ସଙ୍ଗେ ଭୂଗୋଳଶିକ୍ଷା ୬ଷ୍ଠ ଖଣ୍ଡର ପୃ ୮୩-୯୦ର ବିଷୟ ମିଳାଇ ପଢ଼ିଲେ ବିଷୟଗୁଡ଼ିକ ସ୍ପଷ୍ଟରୂପେ ବୁଝିପାରିବ ।

ପୁଷ୍କରିଣୀ-ଜଳର ଉପରିଭାଗ ଚେପ୍ଟା ବା ସମତଳ (flat or plane). ସୂର୍ଯ୍ୟ ଓ ପୃଥିବୀ ଆକାଶରେ ଭାସୁଥିବାରୁ ସେମାନଙ୍କର କେନ୍ଦ୍ର ସର୍ବଦା ଗୋଟିଏ ସମତଳ ବା ଚେପ୍ଟା ଉପରିଭାଗରେ ଅବସ୍ଥିତ ରହେ— ଏହି ସମତଳ ଉପରିଭାଗକୁ "The plane of the Ecliptic" ବା "ସୂର୍ଯ୍ୟାୟନ-ମଣ୍ଡଳ-ସମତଳ" କହାଯାଏ ।

ଜୁନ୍ ୨୧




ସୂର୍ଯ୍ୟ ୨୧୫ ଦିନରେ ଥରେ ଘୂର୍ଣ୍ଣିତ ହୁଏ ଏବଂ ତାହାର ଅକ୍ଷଦଣ୍ଡ (axis) ଏହି ଅୟନ-ମଣ୍ଡଳ-ସମତଳ ଉପରେ ସଳଖ ଭାବରେ ବା ଲମ୍ବଭାବାପନ୍ନ (perpendicular) ହୋଇ ରହେ। ପୃଥିବୀ ଏକ ଦିନ ଓ ରାତିରେ ଥରେ ମାତ୍ର ଘୂର୍ଣ୍ଣିତ ହୁଏ ଏବଂ ସୂର୍ଯ୍ୟାୟନ-ମଣ୍ଡଳ-ସମତଳ ନିକଟରେ ପୃଥିବୀର ଅକ୍ଷଦଣ୍ଡର କୋଣ (angle) ହେଉଛି ୬୬½ ଡିଗ୍ରୀ। ପୃଥିବୀ ନିଜ ଅକ୍ଷଦଣ୍ଡ ଉପରେ ବୁଲୁଥିବାରୁ ହିଁ, ଦିନ ରାତି ହୋଇଥାଏ। ତାହା ପଶ୍ଚିମରୁ ପୂର୍ବ ଅଡ଼କୁ ବୁଲେ; ଏଣୁ ସୂର୍ଯ୍ୟ ପୂର୍ବ ଦିଗରେ ଉଦିତ ହୋଇ ଆକାଶମାର୍ଗରେ ଯାଇ ପଶ୍ଚିମରେ ଅସ୍ତମିତ ହେବା ଭଳି ଦେଖାଯାଏ। ସକାଳ ଓ ସନ୍ଧ୍ୟା ଅପେକ୍ଷା ମଧ୍ୟାହ୍ନ ବେଳେ, ସୂର୍ଯ୍ୟ ଆକାଶର ଅଧିକ ଉଚ୍ଚ ଭାଗରେ ରହିବାରୁ, ସୂର୍ଯ୍ୟତାପ ଅଧିକ ହୁଏ।

ପୃଥିବୀର ଅର୍ଦ୍ଧାଂଶ ସର୍ବଦା ସୂର୍ଯ୍ୟ ଆଡକୁ ବୁଲି ରହେ; ଅତଏବ ତାହାର ଅର୍ଦ୍ଧାଂଶ ସବୁବେଳେ ଆଲୋକ ପାଏ। କିନ୍ତୁ ସକଳ ସ୍ଥାନରେ ବାର ଘଣ୍ଟା ଦିନ ଓ ବାର ଘଣ୍ଟା ରାତି ହୁଏ ନାହିଁ। ସୂର୍ଯ୍ୟାୟନମଣ୍ଡଳ-ସମତଳ ନିକଟରେ ପୃଥିବୀ-ଅକ୍ଷଦଣ୍ଡର ହେବା କୋଣ (angle) ଯୋଗେହିଁ ବିଭିନ୍ନ ସ୍ଥାନରେ ବର୍ଷର ବିଭିନ୍ନ ସମୟରେ ଦିବସର ଦୈର୍ଘ୍ୟ ବା ପରିମାଣରେ ପ୍ରଭେଦ ଘଟିଥାଏ। ପୃଥିବୀର ଅକ୍ଷଦଣ୍ଡ ପ୍ରତି ମୁହୂର୍ତ୍ତ

ଆକାଶର ଗୋଟିଏ ନିର୍ଦ୍ଦିଷ୍ଟ ନକ୍ଷତ୍ର ଆଡ଼କୁ ମୁହଁ କରି ରହେ—ଏହି ନକ୍ଷତ୍ରର ନାମ "ଧ୍ରୁବ ତାରା" (Pole star). କେବେ କେବେ ସୁମେରୁ, କେବେ ଅବା କୁମେରୁ ସୂର୍ଯ୍ୟ ପ୍ରତି ମୁଖ କରି ରହେ। ଏହି କାରଣରୁହିଁ ବର୍ଷର ବିଭିନ୍ନ ସମୟରେ ଦିବସର ପରିମାଣ ଭିନ୍ନ ଭିନ୍ନ ହୋଇଥାଏ।

ସୁମେରୁନ୍ଥ ଠିକ୍ ସୂର୍ଯ୍ୟ ଆଡ଼କୁ ବୁଲି ରହିବାବେଳେ, ସୂର୍ଯ୍ୟକିରଣ କର୍କଟ-କ୍ରାନ୍ତି (Tropic of Cancer) ଉପରେ ସିଧା ଭାବରେ ପଡ଼େ। ପୃଥିବୀ ନିଜ ମାର୍ଗରେ ସୂର୍ଯ୍ୟ ଚାରିଦିଗରେ ବୁଲିବାରୁ ଆମ-ମାନଙ୍କୁ ଦେଖାଯାଏ, ଯେପରି ସୂର୍ଯ୍ୟ ଆକାଶରେ ଦକ୍ଷିଣଦିଗକୁ ଯିବାର ଆରମ୍ଭ କରୁଅଛି ଏବଂ ତିନିମାସ କାଳ ବିଷୁବରେଖାର ଠିକ୍ ମୁଣ୍ଡ ଉପରେ ରହୁଅଛି। ଅପର ତିନିମାସ କାଳ ସୂର୍ଯ୍ୟ ମକର-କ୍ରାନ୍ତି (Tropic of Capricorn) ର ଠିକ୍ ମସ୍ତକୋପରି ରହେ। ପରେ ସୂର୍ଯ୍ୟ ନିଜ ଗତି ବଦଳାଇ ଉତ୍ତର ଦିଗକୁ ଯାଇ ପୁଣି କର୍କଟକ୍ରାନ୍ତିର ଠିକ୍ ଉପରେ ରହିବାଭଳି ଦେଖାଯାଏ। ପ୍ରଥମ ଅବସ୍ଥା(position)ରେ, ସୁମେରୁ ଚତୁର୍ଦ୍ଦିଗସ୍ଥ ଉପରିଭାଗ(cap)ରେ କେବେ ଅନ୍ଧକାର ହୁଏ ନାହିଁ ଏବଂ କୁମେରୁ ଚତୁର୍ଦ୍ଦିଗସ୍ଥ ଉପରିଭାଗ କେବେ ଆଲୋକ ପାଏ ନାହିଁ। ଦ୍ୱିତୀୟ ଅବସ୍ଥାରେ, ଉତ୍ତରର ସେହି ଅଂଶଟି ଆଦୌ ଆଲୋକ ପାଏ ନାହିଁ ଏବଂ ଦକ୍ଷିଣର ସେହି ଭାଗଟି ଅନ୍ଧକାରରେ ମୋଟେ ରହେ ନାହିଁ। ସୁମେରୁର cap କୁ ଚିହ୍ନିତ କରିବା ରେଖାକୁ 'ସୁମେରୁ ମଣ୍ଡଳ' ବା Arctic Circle ଏବଂ ଦକ୍ଷିଣ capକୁ ଚିହ୍ନିତ କରିବା ରେଖାକୁ 'କୁମେରୁ ମଣ୍ଡଳ' ବା Antarctic circle ବୋଲାଯାଏ।

ଦିନ ଓ ରାତ୍ରିର ପରିମାଣ:—

ଜୁନ୍ ୨୧ ତାରିଖରେ [ଏ ପରିଚ୍ଛେଦର ୧ମ ଚିତ୍ର ଦେଖ] ପୃଥିବୀ ଏପରି ଏକ ଅବସ୍ଥାରେ ରହେ, ସୁମେରୁଟି ସେପରି ସୂର୍ଯ୍ୟ ଆଡ଼କୁ ବୁଲି

ରହିଅଛି । ଏଣୁ ସୁମେରୁ ମଣ୍ଡଳ ମଧ୍ୟରେ, ସୁମେରୁ ଚତୁର୍ଦ୍ଦିଗସ୍ଥ ସମସ୍ତ ଉପରିଭାଗ ବା cap ଟି ଆଲୋକରେ ରହେ ଏବଂ ସେଠାରେ ୨୪ଘଣ୍ଟା କାଳ ଦିବସ ରହେ—ମୋଟେ ଅନ୍ଧକାର ରହେ ନାହିଁ । ଠିକ୍ ସେତିକି-ବେଳେ କୁମେରୁ ମଣ୍ଡଳ ମଧ୍ୟରେ, କୁମେରୁ ଚତୁର୍ଦ୍ଦିଗସ୍ଥ ସମଗ cap ଟି ଅନ୍ଧକାରରେ ବୁଡ଼ି ରହେ ଏବଂ ସେଠାରେ ୨୪ ଘଣ୍ଟା କାଳ ରାତ୍ରି ବା ଅନ୍ଧକାର ହୁଏ—ଦିବାଲୋକ ଜମାରୁ ରହେ ନାହିଁ । ବିଷୁବରେଖାର କେଉଁ ଅଂଶ ଆଲୋକ ପାଏ ? ଏଣୁ ଜୁନ୍ ୨୧ ଦିନ, ବିଷୁବରେଖା ଉପରେ ଦିବସ ଓ ରାତ୍ରିର ଦୈର୍ଘ୍ୟ କେତେ ? କର୍କଟକ୍ରାନ୍ତିର କେତେକ ଅଂଶ ଆଲୋକରେ ରହେ ? ଏଣୁ ଜୁନ୍ ୨୧ ତାରିଖରେ, କର୍କଟ-କ୍ରାନ୍ତି ଉପରେ ୨୪ ଘଣ୍ଟାର କେତେକ ଭାଗ ଦିବାଲୋକ ହୋଇଥାଏ ? ଅର୍ଥାତ୍ ଜୁନ୍ ୨୧ ଦିନ କର୍କଟକ୍ରାନ୍ତି ଉପରେ ଦିବସର ପରିମାଣ କେତେ ? ଅତଏବ ଜୁନ୍ ୨୧ ରେ, କର୍କଟକ୍ରାନ୍ତି ଉପରେ ରାତ୍ରିର ପରିମାଣ ସ୍ଥିର କର । ନିଜ ହିସାବ ସାହାଯ୍ୟରେ, ଜୁନ୍ ୨୧ ଦିନ ମକରକ୍ରାନ୍ତି ଉପରେ ଦିବସ ଓ ରାତ୍ରିର ଦୈର୍ଘ୍ୟ ନିର୍ଦ୍ଦେଶ କର ।

ଡିସେମ୍ବର ୨୧




ଡିସେମ୍ବର ତା ୨୧ରିଖରେ, ପୃଥିବୀ ଏପରି ସ୍ଥିତି ବା ଅବସ୍ଥାରେ ରହେ, କୁମେରୁଟି ଯେପରି ସୂର୍ଯ୍ୟଙ୍କୁ ମୁଖ କରି ରହିଅଛି । ବର୍ଷର ଏହି ସମୟରେ ସୁମେରୁ ବା ଉତ୍ତର Cap ଟି ସମ୍ପୂର୍ଣ୍ଣରୂପେ ଅନ୍ଧକାରମୟ ରହେ ଏବଂ

କୁମେରୁ ବା ଦକ୍ଷିଣ Capକୁ ସମ୍ପୂର୍ଣ୍ଣ ଆଲୋକ ପାଉଥାଏ । ପୂର୍ବ ପର, ବିଷୁବରେଖାର ଏକ ଅର୍ଦ୍ଧାଂଶ ଆଲୋକରେ, ଅପର ଅର୍ଦ୍ଧାଂଶ ଅନ୍ଧକାରରେ ରହେ; ଏଣୁ ସେଠାରେ ୧୨ ଘଣ୍ଟା ଦିବାଲୋକ, ୧୨ ଘଣ୍ଟା ରାତ୍ରି ହୋଉଥାଏ । ଜୁନ୍ ୨୧ ଠାରୁ ଉଭୟ କ୍ରାନ୍ତି (tropics) ଉପରେ ଦିନର ପରିମାଣ ଠିକ୍ ବଦଳି ଯାଏ ।

ମାର୍ଚ୍ଚ ୨୧ ଓ ସେପ୍ଟେମ୍ବର ୨୨




ମାର୍ଚ୍ଚ ୨୧ ଓ ସେପ୍ଟେମ୍ବର ୨୨ ତାରିଖରେ, ସୁମେରୁ କିମ୍ବା କୁମେରୁ ସୂର୍ଯ୍ୟ ଆଡ଼କୁ ଝୁଙ୍କି ରହେ ନାହିଁ । ଏହି ସ୍ଥିତି ବା ଅବସ୍ଥାରେ ସମସ୍ତ ମଣ୍ଡଳର (circles) ଅଧେ ଆଲୋକ, ଅଧେ ଅନ୍ଧକାର ପାଏ—(ଉପସ୍ଥ ଚିତ୍ରରେ ଦେଖୁଛ); ଅତଏବ ଏହି ଦୁଇ ଦିନ ଜଗତଯାକ (ସର୍ବତ୍ର) ୧୨ଘଣ୍ଟା ଦିବସ, ୧୨ଘଣ୍ଟା ରାତ୍ରି ହୋଇଥାଏ । ସୂର୍ଯ୍ୟ ବିଷୁବରେଖାର ଠିକ୍ ମୁଣ୍ଡ ଉପରେ ଦେଖାଯିବା ଏହି ଦୁଇ କାଳକୁ 'ବିଷୁବ' (equinoxes) କହନ୍ତି । 'Equi' ର ଅର୍ଥ 'ସମାନ' (equal)—'Nox' ବୋଇଲେ 'ରାତ୍ରି' । ଏ ନାମ ଦିଆ ଯାଇଛି କାହିଁକି ? ଏ ଦୁଇ ଦିନ ପୃଥିବୀର ସର୍ବତ୍ର ରାତ୍ରି ଓ ଦିନ ସମାନ ରହେ । ଉତ୍ତର ଗୋଲାର୍ଦ୍ଧର ମାର୍ଚ୍ଚ ୨୧ ହେଉଛି 'ବସନ୍ତ-ବିଷୁବ' (Spring equinox) ଏବଂ ସେପ୍ଟେମ୍ବର ୨୨ 'ଶରତ୍-ବିଷୁବ' (Autumn equinox)

ସୂର୍ଯ୍ୟ ପୃଥିବୀ ଠାରୁ ଏତେ ଦୂରରେ ଅଛି ଯେ, ପୃଥିବୀକୁ ସ୍ପର୍ଶ କରିବା ସୂର୍ଯ୍ୟକିରଣ ସବୁ ପରସ୍ପର ସହିତ ଓ Plane of Eclipticର ପ୍ରାୟ ସମାନ୍ତର (parallel) ରହିଥାଏ । ଅତଏବ ଯେଉଁ ସକଳ ସ୍ଥାନ ସୂର୍ଯ୍ୟାୟନମଣ୍ଡଳ-ସମତଳ ଉପରକୁ ଆସେ, ସେହି ସେହି ସ୍ଥାନର ଠିକ୍ ମସ୍ତକୋପରି ସୂର୍ଯ୍ୟ କିରଣ ପଡ଼େ ।




୪୪ ଚିତ୍ରର A ଓ B ନାମକ ଦୁଇ ସ୍ଥାନର ବିଷୟ ଆଲୋଚନା କର । A ଓ B ନିକଟରେ ଦର୍ଶିତ ବିନ୍ଦୁଯୁକ୍ତ ରେଖା (dotted lines) ପୃଥିବୀର ଉପରେ ଠିକ୍ ସଳଖ ବା ଲମ୍ବ (vertical) ହୋଇ ରହିଅଛି । ଅନ୍ୟ ଦୁଇ ରେଖା A, B ନିକଟରେ ସୂର୍ଯ୍ୟ କିରଣର ଗତି ଦେଖାଉଅଛି । A ନିକଟରେ ସୂର୍ଯ୍ୟକିରଣ ବକ୍ରଭାବରେ ପଡ଼େ—କିନ୍ତୁ B ରେ ଅଧିକ ବକ୍ର ହୋଇ ପଡ଼େ । ଏଣୁ A—ecliptic ଉପରେ ଥିବା ସମସ୍ତ ସ୍ଥାନ ପରି—ସେତେ ଗରମ ନୁହେଁ; B ଅପେକ୍ଷାକୃତ କମ୍ ଗରମ ।

୧ମଚିତ୍ର ଦେଖ । ଜୁନ ୨୧ ଦିନ, ସୂର୍ଯ୍ୟ କର୍କଟକ୍ରାନ୍ତିର ଠିକ୍ ମୁଣ୍ଡ ଉପରେ ରହେ ଏବଂ ସେଠାରେ ବର୍ଷର ଅନ୍ୟାନ୍ୟ ସମୟ ଅପେକ୍ଷା (ସେତେବେଳେ) ଆକାଶର ଉଚ୍ଚତର ଅଂଶରେ ଅବସ୍ଥାନ କରେ । ଏହି ସମୟକୁ କହନ୍ତି ଉତ୍ତର ଗୋଲାର୍ଦ୍ଧର 'ନିଦାଘ-କ୍ରାନ୍ତି' (Summer

Solstice)। 'Solstice' ର ଅର୍ଥ 'କ୍ରାନ୍ତି' ବା 'ଅୟନାନ୍ତକାଳ'। ଦୀର୍ଘ ଦିନ ଓ ହ୍ରସ୍ୱ ସୂର୍ଯ୍ୟ ଏକ ସମୟରେ ଦେଖା ଦେଇଥାଏ। ୬ଷ୍ଠ ଚିତ୍ରରୁ ଜଣା ଯାଏ ଯେ, ଡିସେମ୍ବର ୨୧ ଦିନ ସୂର୍ଯ୍ୟ କିରଣ ମକରକ୍ରାନ୍ତିର ଠିକ୍ ମସ୍ତକ ଉପରେ ପଡ଼େ। ଏହା ହେଉଛି ଦକ୍ଷିଣ ଗୋଲାର୍ଦ୍ଧର ନିଦାଘ-କ୍ରାନ୍ତି ଏବଂ ଉତ୍ତର ଗୋଲାର୍ଦ୍ଧର ଶୀତ କ୍ରାନ୍ତି (Winter solstice) [Sol = sun; Stice = standing] ଉଦୟ ଅୟନାନ୍ତକାଳରେ, 'ସେହି ଦିନରେ ଗତି ଅଟକି ରହିବା ଅର୍ଥରୁ) ସୂର୍ଯ୍ୟ କ୍ରାନ୍ତି ବା tropics ଉପରେ କେତେକ ସମୟ ନୀତି ସ୍ଥିର ରହିବା ପରି ଦିଶେ।

୧୨ ଓ ୬ଷ୍ଠ ଚିତ୍ରରେ— eclipticରେଖା ଓ ବିଷୁବରେଖା ମଧ୍ୟବର୍ତ୍ତୀ (କେନ୍ଦ୍ରରେ ଥିବା) କୋଣ ବା angleର ମାପ ଦେଖ। କୋଣର ୨୩½ ଡିଗ୍ରୀ। କର୍କଟ କ୍ରାନ୍ତିର ବିଷୁବରେଖାର ସମାନ୍ତର ହୋଇ plane of ecliptic ସଙ୍ଗେ ମିଶିଥିବାରୁ, ଆମେମାନେ କହୁଁ ଯେ, କର୍କଟକ୍ରାନ୍ତି ବିଷୁବରେଖାଠାରୁ ୨୩½ ଡିଗ୍ରୀ ଉତ୍ତରରେ ଅଛି। ଏହି କାରଣରୁହିଁ କହୁଥାଉଁ ଯେ, ମକରକ୍ରାନ୍ତି ବିଷୁବରେଖାଠାରୁ ୨୩½ ଡିଗ୍ରୀ ଦକ୍ଷିଣରେ ଅଛି। ଆଲୋକ ଅନ୍ଧକାର-ରେଖା ଓ ବିଷୁବରେଖା-ମଧ୍ୟବର୍ତ୍ତୀ କେନ୍ଦ୍ର ସ୍ଥିତ] କୋଣର ମାପ। କୋଣର ୬୬½ ଡିଗ୍ରୀ। ସୁମେରୁ ମଣ୍ଡଳର ବିଷୁବରେଖାର ସମାନ୍ତର ହୋଇ ଆଲୋକ-ଅନ୍ଧକାର-ରେଖା ସଙ୍ଗେ ମିଶିଥିବାରୁ ଆମେମାନେ କହୁଁ ଯେ, ସୁମେରୁ ମଣ୍ଡଳ ବିଷୁବରେଖାର ୬୬½ ଡିଗ୍ରୀ ଉତ୍ତରରେ ଅବସ୍ଥିତ। ଏହି କାରଣରୁହିଁ କହୁଥାଉଁ, କୁମେରୁ ମଣ୍ଡଳର ବିଷୁବରେଖାର ୬୬½ ଡିଗ୍ରୀ ଦକ୍ଷିଣରେ ଅବସ୍ଥିତ।

# ଅନୁଶୀଳନୀ

ନିମ୍ନଲିଖିତ ତଫ୍‌ସିଲ୍(table)ର ଶେଷ ଦୁଇ ସ୍ତମ୍ଭ ପୂରଣ କର:—

| ସ୍ଥାନ | ସମୟ | ଦିନ-ପରିମାଣ | ରାତ୍ରି-ପରିମାଣ |
|---|---|---|---|
| ବିଷୁବରେଖା··· | ଡିସେମ୍ବର ୨୧ | | |
| | ମାର୍ଚ୍ଚ ୨୧ | | |
| | ଜୁନ୍ ୨୧ | | |
| | ସେପ୍ଟେମ୍ବର ୨୨ | | |
| କର୍କଟକ୍ରାନ୍ତି··· | ଡିସେମ୍ବର ୨୧ | | |
| | ମାର୍ଚ୍ଚ ୨୧ | | |
| | ଜୁନ୍ ୨୧ | | |
| | ସେପ୍ଟେମ୍ବର ୨୨ | | |
| ମକରକ୍ରାନ୍ତି··· | ଡିସେମ୍ବର ୨୧ | | |
| | ମାର୍ଚ୍ଚ ୨୧ | | |
| | ଜୁନ୍ ୨୧ | | |
| | ସେପ୍ଟେମ୍ବର ୨୨ | | |
| ସୁମେରୁ ମଣ୍ଡଳ··· | ଡିସେମ୍ବର ୨୧ | | |
| | ମାର୍ଚ୍ଚ ୨୧ | | |
| | ଜୁନ୍ ୨୧ | | |
| | ସେପ୍ଟେମ୍ବର ୨୨ | | |
| କୁମେରୁ ମଣ୍ଡଳ··· | ଡିସେମ୍ବର ୨୧ | | |
| | ମାର୍ଚ୍ଚ ୨୧ | | |
| | ଜୁନ୍ ୨୧ | | |
| | ସେପ୍ଟେମ୍ବର ୨୨ | | |

ପ୍ରଶ୍ନ:—ଜୁନ୍ ୨୧ ଦିନ ସୁମେରୁ ମଣ୍ଡଳରେ ଦିବସର, କୁମେରୁ
ମଣ୍ଡଳରେ ରାତ୍ରିର ପରିମାଣ କେତେ ?
ବର୍ଷର କେଉଁ ଦୁଇ ଦିନ ପୃଥିବୀର ସର୍ବତ୍ର ରାତ୍ର ଓ ଦିନ ସମାନ
ରହେ ? କାହିଁକି ସମାନ ରହେ ?
ନିଦାଘ-କ୍ରାନ୍ତି ଓ ଶୀତ-କ୍ରାନ୍ତି ବୋଲିଲେ କଣ ?

—○:○:○—

# ୨ ପୃଥିବୀର ବାୟୁସ୍ରୋତ ଓ ବୃଷ୍ଟିପାତ

ବୃଷ୍ଟିପାତ-ମାନଚିତ୍ର ସାହାଯ୍ୟରେ ବର୍ତ୍ତମାନ ପୃଥିବୀର ବର୍ଷାର ପରିମାଣ ବୁଝି ପାରିବ । ମାନଚିତ୍ରରେ ଯେଉଁ ଭାଗ ବେଶି କଳାବର୍ଣ୍ଣରେ ଚିହ୍ନିତ ହୋଇଅଛି, ସେହି ଭାଗରେ ବେଶି ବୃଷ୍ଟିପାତ ହୋଇଥାଏ । ମାନଚିତ୍ରରୁ ଜଣାଯାଏ ଯେ, ବିଷୁବରେଖାରେ ଓ ତାହାର ଉଭୟ ପାର୍ଶ୍ୱରେ ଅଧିକ ବର୍ଷା ହୁଏ । ମାଲୟ ଦ୍ୱୀପପୁଞ୍ଜ, ଅଷ୍ଟ୍ରେଲିଆ, ପଶ୍ଚିମ-କେନ୍ଦ୍ରିକ ଆଫ୍ରିକା, ଦକ୍ଷିଣ ଓ ମଧ୍ୟ ଆମେରିକାର ଉତ୍ତରାଞ୍ଚଳ ଗାଢ଼-କୃଷ୍ଣବର୍ଣ୍ଣରେ ଚିହ୍ନିତ ହୋଇ ଅଛି । ଏ ସମସ୍ତ ସ୍ଥାନରେ ବେଶି ବୃଷ୍ଟି ପଡ଼େ କାହିଁକି ? କାରଣ, ଏ ସବୁ ସ୍ଥାନ ଅତ୍ୟନ୍ତ ତପ୍ତ ବା ଗରମ, ସୂର୍ଯ୍ୟ ସମୁଦ୍ରରୁ ବହୁ ପରିମାଣରେ ଆର୍ଦ୍ରତା (moisture) ବାଷ୍ପାକାରରେ ପରିଣତ କରି (evaporate)ଟାଣି ନେଇପାରେ ଏବଂ ବାୟୁ ପ୍ରବାହ ଯୋଗେ ଏହି ଆର୍ଦ୍ରତା ବର୍ଷା ଆକାରରେ ଭୂମି ଆଡ଼କୁ ବହିଯାଏ । ସୁଦୂର ଉତ୍ତର ଭାଗରେ ଅତ୍ୟଳ୍ପ ବୃଷ୍ଟି ହୋଇ ଥାଏ । ସେଠାରେ ସୂର୍ଯ୍ୟ ବେଶି ଆର୍ଦ୍ରତା ବାଷ୍ପାକାରରେ ଟାଣି ନେଇ ପାରେ ନାହିଁ । କାରଣ ସେଠାରେ ସୂର୍ଯ୍ୟ-କିରଣ ଖୁବ୍ ବକ୍ର (slant) ହୋଇ ପଡ଼େ । ବୃଷ୍ଟିପାତ-ମାନଚିତ୍ର(Rainfall map of the World)ରୁ ଦେଖାଯାଏ ଯେ, ପର୍ବତର ପୃଷ୍ଠ ଭାଗରେ ଓ ସମୁଦ୍ରଠାରୁ ଦୂରରେ ଥିବା

ଅନେକ ସ୍ଥାନ ଶୁଷ୍କ, ନୀରସ । ସ୍ଥୂଳତଃ ଉତ୍ତର ଗୋଲାର୍ଦ୍ଧ ଅପେକ୍ଷା ଦକ୍ଷିଣ ଗୋଲାର୍ଦ୍ଧରେ ଅଳ୍ପ ଓ କ୍ଷୁଦ୍ରତର ଶୁଷ୍କ-ଚକ୍ର (dry patches) ଦେଖି ପାରୁଛ । କାରଣ ଦକ୍ଷିଣ ଗୋଲାର୍ଦ୍ଧର ଭୂଭାଗ ସବୁ ସମୁଦ୍ରଠାରୁ ସେତେ ଦୂରରେ ନାହିଁ ; ଏଣୁ ବର୍ଷାବାହୀ ବାୟୁ ସେ ସବୁ ସ୍ଥାନରେ ଅଧିକ ସ୍ୱବଧାରେ ପହଞ୍ଚି ପାରୁ ଅଛି ।

ଭୂଗୋଳଶିକ୍ଷା ୧ମ ଓ ୨ୟ ଖଣ୍ଡରେ ମୌସୁମୀ-ବାୟୁ, ବାଣିଜ୍ୟ-ବାୟୁ ଓ ପଶ୍ଚିମ-ବାହୀ ବାୟୁ (westerlies) ସମ୍ବନ୍ଧରେ ଯଥେଷ୍ଟ ପଢ଼ିଅଛ । ଏଠାରେ ସେହି ସେହି ବାୟୁର ବିସ୍ତୃତ ବିବରଣ ଆଉ ଦିଆ ଯାଉ ନାହିଁ । କେଉଁ ବାୟୁ ଯୋଗେ ପୃଥିବୀର କେଉଁ ଅଞ୍ଚଳରେ ବୃଷ୍ଟି ପଡ଼େ, ତାହାର ସୂଚନାହିଁ ଏଠାରେ ଦିଆଯିବ ।

ମାନଚିତ୍ରରେ ଏସିଆର ମୌସୁମି-ଦେଶସକଳ ସ୍ପଷ୍ଟରୂପେ ଚିହ୍ନିତ ହୋଇଅଛି । ଗଙ୍ଗା-ସମତଳ, ମାଲାବାର ଉପକୂଳ ଓ ବର୍ମାରେ ଅତ୍ୟଧିକ ବର୍ଷା ହୋଇଥାଏ । ଶ୍ୟାମଦେଶ, କୋଚନ୍-ଚୀନା ଓ ଚୀନା ଅପେକ୍ଷାକୃତ କମ୍ ବୃଷ୍ଟି ପାଏ ; କାରଣ ଏ ତିନି ଦେଶର ପର୍ବତଶ୍ରେଣୀ ବେଶି ଉଚ୍ଚ ନ ଥିବାରୁ ବର୍ଷା ତାହା ଅତିକ୍ରମ କରି ମହାଦେଶ ଭିତରକୁ ଚାଲି ଯାଏ ।

ଜାପାନ ଦ୍ୱୀପପୁଞ୍ଜ ଦକ୍ଷିଣ-ପୂର୍ବ ମୌସୁମୀ ବାୟୁରୁ ବର୍ଷା ପାଏ । ଉତ୍ତର-ପଶ୍ଚିମ ମୌସୁମୀରୁ ବି କିଛି ପାଇ ଥାଏ । ଏସିଆର ସମସ୍ତ କୃଷ୍ଣ-ବର୍ଣ୍ଣ ଚିହ୍ନିତ ଭାଗରେ ମୌସୁମୀ ବର୍ଷା ପଡ଼ିଥାଏ ; ଅତଏବ ସେ ସବୁ ଅଞ୍ଚଳ ଅତ୍ୟନ୍ତ ଫଳବନ୍ତ, ଜନବହୁଳ । ଏସିଆର ଅବଶିଷ୍ଟ ଭାଗ ଶୁଷ୍କତର । ବର୍ଷା ହିମାଳୟ ଡେଇଁ ଉତ୍ତରକୁ ଆଉ ଯାଇ ପାରେ ନାହିଁ; ଏଣୁ ତିବତ୍ ଗୋଟିଏ ବୃଷ୍ଟିହୀନ, ନୀରସ ଦେଶ । ଏସିଆର ମଧ୍ୟ ଭାଗରେ ତୁରଗୋଟିଏ ବୃହତ୍ ମରୁଭୂମି ଦେଖାଯାଏ । ଏଉଁଟି ମରୁଭୂମି ସମୁଦ୍ର ଠାରୁ ବହୁ ଦୂରରେ ଅବସ୍ଥିତ ଥିବାରୁ ବୃଷ୍ଟି-ବାହୀବାୟୁ ସେଠାକୁ

ଯାଇ ପାରେ ନାହିଁ । ଏହା ଛଡ଼ା, ପର୍ବତଶ୍ରେଣୀ ସମୁଦ୍ର-ପବନକୁ ଅଟକ ରଖେ—ସେଠାକୁ ଯିବ ଦିଏ ନାହିଁ । ଉତ୍ତର-ପୂର୍ବ-ବାଣିଜ୍ୟ-ବାୟୁ ଶୁଷ୍କ, ମରୁଭୂମି ଉପରେ ବହୁବାରୁ ସେଠାରେ ମୋଟେ ବର୍ଷା ହୁଏ ନାହିଁ । ଆରବ ଦେଶ ନଦୀଶୂନ୍ୟ । ପାରସ୍ୟ, ଆଫଘାନସ୍ଥାନ, ଉତ୍ତର-ପଶ୍ଚିମ ଭାରତର କେତେକାଂଶ ମଧ୍ୟ ଅତ୍ୟନ୍ତ ଶୁଷ୍କ । କାରଣ, ଏ ସବୁ ସ୍ଥାନ ଦକ୍ଷିଣ-ପଶ୍ଚିମ-ମୌସୁମୀବାୟୁ-ମାର୍ଗର ଖୁବ୍ ପଶ୍ଚିମ ଭାଗରେ ରହୁଯାଏ—ବର୍ଷା ଜମାରୁ ପାଏ ନାହିଁ । ଏସିଆର ଅତି ଉତ୍ତର ଭାଗରେ ସାମାନ୍ୟ ବର୍ଷା ହୁଏ । ଏ ବର୍ଷାର କେତେକାଂଶ ଉତ୍ତର ମହାସାଗରରୁ ଆସେ ଏବଂ ଅବଶିଷ୍ଟାଂଶ ୟୁରୋପ ଉପରେ ବହି ଆସିବା ଆର୍ଦ୍ରବାୟୁ ଯୋଗେ ହୋଇ ଥାଏ । ଏସିଆର ସର୍ବପ୍ରଧାନ ନଦୀସକଳ ମୌସୁମୀ-ବର୍ଷାରେ ପୁଷ୍ଟ ।

ଆଟ୍‌ଲାଣ୍ଟିକ୍ ମହାସାଗରର ପଶ୍ଚିମ ଓ ଦକ୍ଷିଣ-ପଶ୍ଚିମ ବାୟୁ ବହି ଆସି ୟୁରୋପରେ ଢେର ବୃଷ୍ଟି ଦିଏ । ଏ ମହାସାଗରଟି ଉଷ୍ଣ, ଏଣୁ ଏଠାରୁ ବହି ଆସିବା ପବନରେ ଅଧିକ ତାପ ଓ ଆର୍ଦ୍ରତା ଥାଏ । ବ୍ରିଟେନ୍ ଓ Ireland ର ପଶ୍ଚିମୋପକୂଳ ଖୁବ୍ ପାର୍ବତ୍ୟ; ଅତଏବ ଏ ଭାଗରେ (ସମତଳ ଅପେକ୍ଷା) ଅଧିକ ବୃଷ୍ଟି ପଡ଼େ । ଶୀତ ଦିନେ ଭୂମଧ୍ୟ ସାଗରୋପକୂଳରେ ଖୁବ୍ ବର୍ଷା ହୁଏ । ଉତ୍ତର ଅମେରିକାର ପୂର୍ବାର୍ଦ୍ଧ ଅତିଶୟ ଆର୍ଦ୍ର ବା ବୃଷ୍ଟିମୟ । ଏଠାର ବୃଷ୍ଟି ଆଟ୍‌ଲାଣ୍ଟିକରୁ ଆସେ । ଉତ୍ତର ପୂର୍ବ-ବାଣିଜ୍ୟ ବାୟୁ ମେକ୍‌ସିକୋ ଉପସାଗର ଓ ମିସିସିପି-ନିମ୍ନଭୂମିରେ ବହି ଯାଏ । ଉତ୍ତର-ପଶ୍ଚିମୋପକୂଳ ଉତ୍ତର-ପ୍ରଶାନ୍ତ ମହାସାଗରର ଆର୍ଦ୍ର ପଶ୍ଚିମ-ପବନରୁ ବର୍ଷା ପାଇଥାଏ । ଏ ମହାଦେଶର ମଧ୍ୟଭାଗ ଶୁଷ୍କ ।

ଦକ୍ଷିଣ ଅମେରିକାର ଉତ୍ତର-ପୂର୍ବ ଉପକୂଳ ଉତ୍ତର-ପୂର୍ବ ବାଣିଜ୍ୟ ବାୟୁ ଏବଂ ଦକ୍ଷିଣ ପୂର୍ବୋପକୂଳ (Plate)ମୁହାଣ ପର୍ଯ୍ୟନ୍ତ

ଦକ୍ଷିଣ-ପୂର୍ବ ବାଣିଜ୍ୟ ବାୟୁକୁ ମୃଦୁ କରି ରଖିଅଛି । ତେବେ ଏ ପବନ ସବୁ ଆଣ୍ଡିଜ୍ ପର୍ବତରେ ଅଟକି ରହି ପ୍ରଶାନ୍ତୋପକୂଳକୁ ବର୍ଷା ଦିଏ ନାହିଁ । ଦକ୍ଷିଣ-ପୂର୍ବୋପକୂଳ ପ୍ରାୟ ବୃଷ୍ଟିବିହୀନ । ଆଫ୍ରିକାର ଉତ୍ତରାଞ୍ଚଳ ପୃଥିବୀର ବୃହତ୍ତମ ମରୁଭୂମିରେ ଆବୃତ । ସାହାରାରେ ଉ: ପୂ: ବାଣିଜ୍ୟ ବାୟୁ ବହେ ସତ, କିନ୍ତୁ ଏହା ବାଲୁକାମୟ ପ୍ରଦେଶ ଉପରେ ବହିଯିବାରୁ ବର୍ଷା ହୁଏ ନାହିଁ । ଦ: ପୂ: ବା: ବାୟୁ ଦ୍ୱାରା [ବିଷୁବରେଖା ଦକ୍ଷିଣସ୍ଥିତ] ପୂର୍ବୋପକୂଳରେ ବୃଷ୍ଟିପାତ ହୁଏ । ଏ ବାୟୁ ଯୋଗେ ମାଡ଼ାଗାସ୍କାର୍ ଦ୍ୱୀପରେ ପ୍ରଚୁର ବର୍ଷା ହୋଇଥାଏ ।

ଅଷ୍ଟ୍ରେଲିଆର ଉତ୍ତରୋପକୂଳରେ ନିଦାଘ-ମୌସୁମୀ ବହେ; ସୁତରାଂ ସେଠାରେ ପ୍ରବଳ ବର୍ଷା ହୁଏ । ପ୍ରଶାନ୍ତୋପକୂଳଟି ଦ:-ପୂ: ବା: ବାୟୁକୁ ମୁଖ କରି ଥିବାରୁ ସେଠାରେ ବି ବୃଷ୍ଟି ପଡ଼େ । କିନ୍ତୁ ଡିଭାଇ-ଡିଙ୍ଗ୍ ପର୍ବତ ପ୍ରତିବନ୍ଧକ ଯୋଗୁଁ ଏ ବର୍ଷା ମହାଦେଶ ମଧ୍ୟକୁ ଯାଇ ପାରେ ନାହିଁ । ଏଣୁ ମଧ୍ୟ-ଅଷ୍ଟ୍ରେଲିଆ ଅତ୍ୟନ୍ତ ନୀରସ । ଶୀତ ଦିନେ ପଶ୍ଚିମବାହୀ ବାୟୁ ମହାଦେଶର ଦକ୍ଷିଣୋପକୂଳ ଓ ଟାସ୍‌ମେନିଆ ଦ୍ୱୀପକୁ ବୃଷ୍ଟି ଯୋଗାଏ ।

[ଉ: ପୂ: କିମ୍ବା ଦ: ପୂ:] ବାଣିଜ୍ୟବାୟୁ ଯେ କୌଣସି ମହା-ଦେଶର ପୂର୍ବୋପକୂଳକୁ ବର୍ଷା ଯୋଗାଏ ଏବଂ ପଶ୍ଚିମୋପକୂଳକୁ ଶୁଷ୍କ, ଅନୁର୍ବର କରି ରଖେ । ଉ: ପୂ: ବା: ବାୟୁ ଶୀତଳ ପ୍ରଦେଶରୁ ଉଷ୍ଣ ପ୍ରଦେଶକୁ ବହିଯାଏ—ଫଳରେ, ଆର୍ଦ୍ରତା ଦିଏ ନାହିଁ କିନ୍ତୁ ହରଣ କରି ନିଏ । ତେବେ ଏହା ମହାସାଗର ଦେଇ ମହାଦେଶମାନଙ୍କର ପୂର୍ବୋପକୂଳକୁ ବହି ଗଲେ ବର୍ଷା ହୁଏ । ଦୃଷ୍ଟାନ୍ତ:— ଦ: ଆମେରି-କାର Cape St Roque ଓ ମେକ୍ସିକୋ ଉପସାଗର-ମଧ୍ୟବର୍ତ୍ତୀ ଭୂଭାଗ ।

ପକ୍ଷାନ୍ତରେ, ଆଫ୍ରିକାର ପଶ୍ଚିମୋପକୂଳ ଶୁଷ୍କ ଓ ମରୁଭୂମି; କାରଣ ଏଠାରେ ଉ: ପୂ: ବା: ବାୟୁ ଭୂମିଆଡ଼ୁ ବହି ଯାଇଥାଏ । ଉତ୍ତର

ଆମେରିକାର ପଶ୍ଚିମୋପକୂଳରେ ବର୍ଷତମାମ କମ୍ ବର୍ଷା ହୁଏ; କାରଣ ଏଠାରେ ମଧ୍ୟ ଉ: ପୂ: ବା: ବାୟୁ ଭୂମି ଅଡ଼୍ଭ ବହେ । ଏଣୁ କାଲିଫର୍ଣିଆ ଉପସାଗରର ଦକ୍ଷିଣରେ Colorado ମରୁଭୂମି ଅବସ୍ଥିତ । ଦ: ପୂ: ବା ବାୟୁ ଦ୍ୱାରା ଆଫ୍ରିକା, ଦ: ଆମେରିକା ଓ ଅଷ୍ଟ୍ରେଲିଆର ପୂର୍ବୋପକୂଳରେ ଢେର ବୃଷ୍ଟି ହୁଏ—ପଶ୍ଚିମୋପକୂଳ ପ୍ରାୟ ବୃଷ୍ଟିହୀନ ହୋଇ ପଡ଼େ । ଆଫ୍ରିକାର ଦକ୍ଷିଣ-ପଶ୍ଚିମୋପକୂଳରେ କଲହରି ମରୁଭୂମି, ଦ: ଆମେରିକାର ପ୍ରଶାନ୍ତୋପକୂଳର ମଧ୍ୟଭାଗରେ Atacama ମରୁଭୂମି ଓ ଅଷ୍ଟ୍ରେଲିଆର ପଶ୍ଚିମୋପକୂଳରେ The Great Desert of Australia ଅବସ୍ଥିତ ।

ପଶ୍ଚିମ-ପବନ [westerlies] ବାଣିଜ୍ୟବାୟୁର ବିପରୀତ କାମ କରେ— ପଶ୍ଚିମୋପକୂଳକୁ ବର୍ଷା ଦିଏ, ପୂର୍ବୋପକୂଳକୁ ଉପହାନ କରି ପକାଏ । ଉତ୍ତର ଗୋଲାର୍ଦ୍ଧରେ, ଉତ୍ତର ଆଟ୍‌ଲାଣ୍ଟିକ୍ ଓ ଉ: ପ୍ରଶାନ୍ତ ମହାସାଗର ଉପରେ ପଶ୍ଚିମ-ପବନ ବର୍ଷତମାମ ନିୟମିତରୂପେ ବହୁଥାଏ । ଏହି କାରଣରୁ ୟୁରୋପର ପଶ୍ଚିମୋପକୂଳ ଓ ଉ: ଆମେରିକାର ପ୍ରଶାନ୍ତୋପକୂଳରେ ଯଥେଷ୍ଟ ବର୍ଷା ହୁଏ । ଏ ବାୟୁ ସ୍ରୋତ ଯୋଗେ ଖରାଦିନେ ଦ: ଆମେରିକାର ପଶ୍ଚିମୋପକୂଳ ଖୁବ୍ ବୃଷ୍ଟି ପାଇଥାଏ । ନ୍ୟୁଜିଲାଣ୍ଡ୍‌ର ପଶ୍ଚିମୋପକୂଳ ପୂର୍ବୋପକୂଳ ଅପେକ୍ଷା ବର୍ଷଯାକ ଅଧିକ ବୃଷ୍ଟିପୂର୍ଣ୍ଣ ରହେ ।

ମରୁଭୂମି:— ମରୁଭୂମିରେ ଗ୍ରୀଷ୍ମଋତୁ ଅତି ଦୀର୍ଘକାଳସ୍ଥାୟୀ ହୁଏ, ଖୁବ୍ ଊଣା ବର୍ଷା ହୁଏ । ଜଳାଭାବହିଁ ମରୁଭୂମିର ପ୍ରଧାନ କାରଣ । ଅନେକ ମରୁଭୂମିରେ ବୃକ୍ଷ ଲତା ଆଦୌ ଜନ୍ମେ ନାହିଁ । ଭାରତର ଆରାବଲୀ ପର୍ବତ ପଶ୍ଚିମବର୍ତ୍ତୀ ପ୍ରଦେଶକୁ ଗୋଟାଏ ଅର୍ଦ୍ଧ-ମରୁଭୂମି—ନିକଟରେ ପୂର୍ଣ୍ଣ ମରୁଭୂମି, Thar, ଦେଖାଯାଏ । ଆଫ୍ରିକାର ସାହାରା ମରୁଭୂମି ସମଗ୍ର ଭାରତଠାରୁ ବି ବଡ଼—ପୂର୍ବରେ ଲୋହିତସାଗରୋପକୂଳଠାରୁ ପଶ୍ଚିମରେ ଆଟ୍‌ଲାଣ୍ଟିକ୍ ମହାସାଗର ଯାଏଁ ବିସ୍ତୃତ । ଆଫ୍ରିକାର ଦ: ପ:

ଅଞ୍ଚଳରେ Kalahari ମରୁଭୂମି । ଉ: ଅଫ୍ରିକାର ସାହାରା ଓ ଅର୍ଦ୍ଧ-ମରୁଭୂମିମାଳା ପୀତ ସାଗର [Yellow sea] ପର୍ଯ୍ୟନ୍ତ ଚାଲିଅଛି । ଏହି ପ୍ରକାଣ୍ଡ ଶୁଷ୍କ ଭାଗରେ ଆରବ, ପାରସ୍ୟ, ବେଲୁଚସ୍ଥାନ, ଅଫଗନ-ସ୍ଥାନ, ଏସିଆମାଇନରର କେତେକାଂଶ, ତୁର୍କିସ୍ଥାନ, ତିବତ୍ ଓ ମଙ୍ଗୋଲିଆ ଅବସ୍ଥିତ । ଏ ସମସ୍ତ ଭାଗରେ ଆର୍ଦ୍ରତା-ବାହୀ ବାୟୁ ବହେ ନାହିଁ । ଆରବ ଓ [ମଙ୍ଗୋଲିଆର] ଗୋବି ହେଉଛି ଏସିଆର ବୃହତ୍ତମ ମରୁଭୂମି । ଏହି ବିଶାଳ ଭୂଭାଗରେ ଅତ୍ୟଳ୍ପ ମାତ୍ର ବୃଷ୍ଟି ହୋଇପାରେ । ମଧ୍ୟ-ଅଷ୍ଟ୍ରେଲିଆର ଅଧିକାଂଶ ସମୁଦ୍ରଠାରୁ ଦୂରରେ ଅଛି; ଏଣୁ ଏହା ମରୁଭୂମି ବା ଅର୍ଦ୍ଧ-ମରୁଭୂମିରେ ଆଚ୍ଛାଦିତ । ଉ: ଓ ଦ: ଆମେରିକାରେ ପୂର୍ଣ୍ଣ ଓ ଅର୍ଦ୍ଧ ମରୁଭୂମିମାନ ଦେଖାଯାଏ । ପ୍ରଶାନ୍ତ ମହାସାଗରର ବାୟୁ ପର୍ବତଶ୍ରେଣୀରେ ଅଟକି ରହିବାରୁ ଏଠାରେ ବର୍ଷା ହୋଇ ପାରେ ନାହିଁ ।

ପ୍ରଶ୍ନ:— ବିଷୁବରେଖାରେ ଓ ତାହାର ଦୁଇ ପାର୍ଶ୍ୱରେ ଅଧିକ ବର୍ଷା ହେବାର କାରଣ କଣ ?
ପୃଥିବୀର ଅତି ଉତ୍ତର ଭାଗରେ ଅତ୍ୟଳ୍ପ ବୃଷ୍ଟି ପଡ଼େ କାହିଁକି ?
ଆରବ, ସାହାରା ଓ ମଧ୍ୟ-ଅଷ୍ଟ୍ରେଲିଆ କି ହେତୁ ଶୁଷ୍କ ?
ବାଣିଜ୍ୟବାୟୁ ଓ ପଶ୍ଚିମ-ବାୟୁ କି କାର୍ଯ୍ୟ କରେ ?



## ୩,୪ ତାପ-ଶୈତ୍ୟ-ପରିମାଣ

ଯେ କୌଣସି ସ୍ଥାନର ତାପ-ଶୈତ୍ୟ-ପରିମାଣ ବା temperature ତାପମାନଯନ୍ତ୍ର (thermometer) ସାହାଯ୍ୟରେ ମାପିବାକୁ ବା ଠିକ୍ କରି ନେବାକୁ ହୁଏ । ତାପମାନ-ଯନ୍ତ୍ରର ଅର୍ଥ, ଉପଯୋଗିତା ଇତ୍ୟାଦି

ସମ୍ବନ୍ଧରେ ବିଜ୍ଞାନ-ଶିକ୍ଷକ ତୁମମାନଙ୍କୁ ବୁଝାଇ ଅଛନ୍ତି—ତାହାର ବିସ୍ତୃତ ବିବରଣ ଏଠାରେ ଦିଆ ଯିବ ନାହିଁ । ଯେଉଁ ଯନ୍ତ୍ରଦ୍ୱାରା ଆମ୍ଭେମାନେ କୌଣସି ସ୍ଥାନର ତାପ-ଶୈତ୍ୟ ପରିମାଣ ପରୀକ୍ଷା କରୁଁ ବା ବୁଝି ରଖୁଁ, ତାହାକୁ କହନ୍ତି 'ଫାରେନ୍‌ହାଇଟ୍ ତାପମାନ ଯନ୍ତ୍ର' (Fahrenheit thermometer). ଫାରେନ୍‌ହାଇଟ୍ ୩୨ ଡିଗ୍ରୀରେ (32°F) ଜଳ (ଶୈତ୍ୟପ୍ରଭାବରେ) ଜମିଯାଏ ବା ଘନୀଭୂତ ହୋଇଯାଏ (freezes) ଏବଂ ଫାରେନ୍‌ହାଇଟ୍ ୨୧୨ ଡିଗ୍ରୀରେ (212°F) ଫୁଟି ଉଠେ (boils). ସ୍ଥୂଳରେ କହାଯାଏ ଯେ, ଜଳ ଫା: ୩୨ ଡିଗ୍ରୀରେ [32°F] ଅତ୍ୟନ୍ତ ଶୀତଳ, ଫା: ୫୦ ଡିଗ୍ରୀରେ ଶୀତଳ, ଫା: ୬୦ ଡିଗ୍ରୀରେ ଉଷ୍ଣ, ଫା: ୭୦ ଡିଗ୍ରୀରେ ଅତ୍ୟନ୍ତ ଉଷ୍ଣ ଓ ଫା: ୮୦ ଡିଗ୍ରୀରେ ଗରମ ବା ତପ୍ତ ରହେ । ଅସ୍ତେ ଅସ୍ତେ ଏହିଭଳି ଅଧିକ ଗରମ ହୋଇ ଫା: ୨୧୨ ଡିଗ୍ରୀରେ ଫୁଟେ ।

ଜଳବାୟୁ-ମାନଚିତ୍ର [Climate Map] ସାହାଯ୍ୟରେ ଆମ୍ଭେମାନେ ଯେ କୌଣସି ସ୍ଥାନର ଜଳବାୟୁ ଅତି ସହଜରେ, ଅତିଶୀଘ୍ର ଠିକ୍‌ରୂପେ ବୁଝିପାରୁଁ । ଏ ଶ୍ରେଣୀର ମାନଚିତ୍ରମାନଙ୍କ ମଧ୍ୟରେ ସର୍ବ-ପ୍ରଧାନ ହେଉଛି ତାପ ଶୈତ୍ୟ-ପରିମାଣ-ମାନଚିତ୍ର (temperature map) ଓ ବାୟୁ-ଗତି-ମାନଚିତ୍ର । ପ୍ରଥମୋକ୍ତ ମାନଚିତ୍ରକୁ ଇଂରେଜୀରେ କହନ୍ତି 'isothermal map (ସମତାପ-ମାନଚିତ୍ର) । Iso = equal, therm = heat.

ସମତାପସୂଚକ ମାନଚିତ୍ର ବିଷୟ ବୁଝିବାକୁ ଯିବା ଆଗରୁ, ପୂର୍ବ ଜ୍ଞାନ ସାହାଯ୍ୟରେ ନିମ୍ନଲିଖିତ ଦୁଇଟି ପ୍ରଶ୍ନର ଉତ୍ତର ଦିଅ । ବିଷୁବ-ରେଖାର ଅତି ଉତ୍ତର ଭାଗରେ ସୂର୍ଯ୍ୟ କେବେ ମସ୍ତକୋପରି ଉଦିତ ହୁଏ ? ବିଷୁବରେଖାର ସୁଦୂର ଦକ୍ଷିଣରେ ସେ କେବେ ଠିକ୍ ମସ୍ତକ ଉପରେ ଦେଖାଯାଏ ? ଏ ଦୁଇ ପ୍ରଶ୍ନର ଉତ୍ତରରୁ ଅନୁମାନ କରି ପାରିବ ଯେ, ବିଷୁବରେଖାର ଉତ୍ତରରେ ଜୁନ୍ ଅତି ଗରମ, ଡିସେମ୍ବର

ଅତି ଥଣ୍ଡା ମାସ । ଏ ଅନୁମାନ କିନ୍ତୁ ଠିକ୍ ନୁହେ ! ବିଷୁବରେଖାର ଉତ୍ତରରେ ଥିବା ଅନେକ ସ୍ଥାନରେ ଯୁଲାଇମାସ ରହେ ସବାଠୁ ଗରମ, ଜାନୁଏରୀ ରହେ ସବାଠୁ ଥଣ୍ଡା : କାହିଁକି ? ଦିନଯାକ ସୂର୍ଯ୍ୟ ପୃଥିବୀକି ତାପ ଦିଏ ଏବଂ ପୃଥିବୀ ଏହି ତାପର କେତେକାଂଶ ପବନକୁ ଦେଇଥାଏ । ରାତ୍ରିଟମାମ ପୃଥିବୀ ନିଜ ତାପ ବିସର୍ଜନ ବା ଦାନ କରେ —ଆଉ ଗ୍ରହଣ କରେ ନାହିଁ । କୌଣସି ଏକ ସ୍ଥାନ ଦିନ ଓ ରାତ୍ରିରେ ଯେତିକି ତାପ ଛାଡ଼େ, ତାହା ଅପେକ୍ଷା ସୂର୍ଯ୍ୟ ଯଦି ଦିନରେ ଅଧିକ ତାପ ଦିଏ, ତାହାହେଲେ ସେଇ ସ୍ଥାନଟି ଅଳ୍ପେ ଅଳ୍ପେ ଗରମ ହୋଇ ଉଠେ । କୌଣସି ସ୍ଥାନକୁ ସୂର୍ଯ୍ୟ ଦିନବେଳେ ଯେତିକି ତାପ ଦିଏ, ତାହା ଅପେକ୍ଷା ସେହି ସ୍ଥାନ ଯଦି ଦିନ ଓ ରାତିରେ ଅଧିକ ତାପ ଛାଡ଼େ, ତାହାହେଲେ ସ୍ଥାନଟି ଅଳ୍ପେ ଅଳ୍ପେ ଶୀତଳ ହୋଇ ପଡ଼େ । ଯୁଲାଇ ମାସରେ ଉତ୍ତର ଗୋଲାର୍ଦ୍ଧ ଯେତିକି ତାପ ବିସର୍ଜନ କରେ, ତାହା ଅପେକ୍ଷା ଅଧିକ ସୂର୍ଯ୍ୟତାପ ପାଏ; ଏଣୁ ଜୁନ୍ ଅପେକ୍ଷା ଯୁଲାଇ ମାସରେ ଉତ୍ତର ଗୋଲାର୍ଦ୍ଧ ଅଧିକ ଗରମ ରହେ । କିନ୍ତୁ ଯୁଲାଇ ପରେ ଉତ୍ତର ଗୋଲାର୍ଦ୍ଧ ତାପ ହରାଇବାକୁ ଆରମ୍ଭ କରେ ଏବଂ ଜାନୁଏରୀ ପର୍ଯ୍ୟନ୍ତ କ୍ରମେ ଅଧିକ ତାପ ହରାଇବସେ । ଏଣୁ ଜାନୁଏରୀ ହେଉଛି ଶୀତଳ-ତମ ମାସ । ଦକ୍ଷିଣ ଗୋଲାର୍ଦ୍ଧର ଅତି ଗରମ, ଅତି ଥଣ୍ଡାମାସ ବିଷୟ ବି ଏହିପରି ବୁଝି ପାରିବ ।

କୌଣସି ଏକ ସ୍ଥାନ ବଡ ଖରାମାସରେ କିପରି ଗରମ ରହେ ଏବଂ ବଡ଼ ଶୀତ ମାସରେ କିପରି ବା ଥଣ୍ଡା ରହେ, ତାହା ଜାଣି ରଖିବା ଉଚିତ । ପୃଥିବୀର ସକଳ ସ୍ଥାନରେ ଲୋକେ ଚରମ ଓ ନ୍ୟୂନ ତାପମାନ-ଯନ୍ତ୍ର ("maximum and minimum" thermometers) ରଖି ତଦ୍ଦ୍ୱାରା ବର୍ଷର ପ୍ରତ୍ୟେକ ଦିନ ଚରମ ବା ସର୍ବାଧିକ (maximum) ଓ ନ୍ୟୂନତମ (minimum)ତାପ-ଶୈତ୍ୟ-ପରିମାଣ ପରୀକ୍ଷା କରି ଦେଖି-

ଥାନ୍ତି । ପ୍ରତି ଦିନ ମଧ୍ୟବର୍ତ୍ତୀ ତାପ-ଶୈତ୍ୟ-ପରିମାଣ (mean temperature)ର ଧରି ଯାଏ । (Maximum ଓ Minimum ର ମଧ୍ୟବର୍ତ୍ତୀ ପରିମାଣକୁ 'Mean' କହାଯାଏ । ମନେ କର, ଗୋଟିଏ ଦିନର ତାପ-ଶୈତ୍ୟର ଚରମ ବା maximum ପରିମାଣ ହେଉଛି ଫା ୯୨ ଡିଗ୍ରୀ ଏବଂ ସେହି ଦିନର ନ୍ୟୂନତମ (ବା minimum) ତାପ-ଶୈତ୍ୟ ପରିମାଣ ଫା ୮୪ ଡିଗ୍ରୀ, ତାହାହେଲେ ମଧ୍ୟମ (ବା mean) ତାପ-ଶୈତ୍ୟ-ପରିମାଣ ହେବ ଫା ୮୮ ଡ଼ିଗ୍ରୀ । ସମଗ୍ର ମାସର ତାପ ଶୈତ୍ୟ-ପରିମାଣ ଧରିଗଲେ ସେହି ମାସର ହାରାହାରି ବା ସାଧାରଣ ମଧ୍ୟମ-ପରିମାଣ (average mean temperature)ବୁଝାଯାଇ ପାରିବ । ପ୍ରତି ବର୍ଷ ଏପରି ତାପ-ଶୈତ୍ୟ-ପରିମାଣ ପରୀକ୍ଷା କରି ଯାଏ ଏବଂ ବର୍ଷର ପ୍ରତିମାସ ନେଇ ହାରାହାରି ମଧ୍ୟମ(mean) ପରିମାଣର ହାରାହାରି ବା average ସ୍ଥିର କରାଯାଏ । ବହୁ ବର୍ଷର ପରୀକ୍ଷା ଫଳରେ ପ୍ରତି ମାସର average mean temperatures ସଂଗୃହୀତ ହୋଇ ପୃଥିବୀ-ମାନଚିତ୍ରରେ ଚିହ୍ନିତ କରି ଯାଏ । ଯେଉଁ ସମସ୍ତ ହାରାହାରି-ମଧ୍ୟମ-ପରିମାଣ ଏକ ବା ସମାନ ରହେ, ସେ ସବୁ ଗୋଟିଏ ରେଖାରେ ପରସ୍ପର ସହିତ ସଂଯୁକ୍ତ କରାହୁଏ । ସେହି ରେଖାକୁ କହନ୍ତି 'ସମତାପରେଖା' ବା 'isotherm.' ସମଗ୍ର ପୃଥିବୀ-ମାନଚିତ୍ରଟି କେବଳ ଚାରି ଗୋଟି ସମତାପ-ରେଖାରେ ଚିହ୍ନିତ ହୁଏ— ଫା ୩୨, ଫା ୫୦, ଫା ୭୦ ଓ ଫା ୯୦.

ଜାନୁଏରୀ ଓ ଯୁଲାଇ ମାସର ସମତାପ-ମାନଚିତ୍ର [isothermal maps] ଟାଣି ପ୍ରତ୍ୟେକ ମାନଚିତ୍ରରେ, ଫା ୩୨ ଡିଗ୍ରୀରୁ କମ୍ ହାରାହାରି-ମଧ୍ୟମ-ପରିମାଣ ଥିବା ସ୍ଥାନ ସବୁ ନୀଳରଙ୍ଗରେ ଚିହ୍ନିତ କର । ଜାନୁଏରୀ ଓ ଯୁଲାଇରେ ଫା ୩୨ ଡିଗ୍ରୀ ସମତାପ-ରେଖା କେଉଁ କେଉଁ ଦେଶ ଭେଦ କରି ଯାଏ ? ପୃଥିବୀର କେଉଁ ସମସ୍ତ ଭାଗ ସବୁବେଳେ ଫା ୩୨ ଡିଗ୍ରୀରୁ ଊଣା ରହେ ? ଫା ୯୦ ଡ଼ିଗ୍ରୀରୁ ଅଧିକ ତାପ ଥିବା ସ୍ଥାନସବୁ ନାଲି

ରଙ୍ଗରେ ରଞ୍ଜାଅ । ପୃଥିବୀର କେଉଁ କେଉଁ ଅଂଶ ସର୍ବଦା ଫା ୯୦ ଡିଗ୍ରୀରୁ ଅଧିକ ରହେ ? ଫା ୩୨ ଓ ଫା ୫୦ ଡିଗ୍ରୀ ମଧ୍ୟବର୍ତ୍ତୀ ପରିମାଣର ଭାଗସବୁ ହରିଦ୍ବର୍ଣ୍ଣରେ ରଞ୍ଜିତ ହେଉ । ଫା ୫୦ ଓ ଫା ୭୦ ମଧ୍ୟବର୍ତ୍ତୀ ପରିମାଣର ଅଞ୍ଚଳକୁ ପୀତବର୍ଣ୍ଣରେ ରଞ୍ଜିତ କରାଯାଉ । ଫା ୭୦ ଓ ଫା ୯୦ ମଧ୍ୟବର୍ତ୍ତୀ ପରିମାଣର ସ୍ଥାନସକଳ ଅନ୍ୟ କୌଣସି ରଙ୍ଗରେ ପ୍ରଦର୍ଶିତ ହେଉ । ଉପରୋକ୍ତ ୪ଗୋଟି ସମତାପ-ରେଖା ମଧ୍ୟରୁ ପ୍ରତ୍ୟେକ ରେଖା କେଉଁ ଉଚ୍ଚଭୂମି, ନିମ୍ନଭୂମି, ନଦୀ. ହ୍ରଦ, ସାଗର ଓ ଦ୍ୱୀପ ମଧ୍ୟ ଦେଇ ଯାଉ ଅଛି ? ତୁମ ନିଜ ସହରର ଏବଂ ମାନ୍ଦ୍ରାଜ, କଲିକତା, ଦିଲ୍ଲୀ, ବୋମ୍ବାଇ, ଲଣ୍ଡନ, ପାରି, ପେଟ୍ରୋଗ୍ରାଡ଼୍, ନ୍ୟୁୟର୍କ ଇତ୍ୟାଦି ପ୍ରଧାନ ନଗରର ସ୍ଥିତି (position) ନିର୍ଦ୍ଦେଶ କର —ଜାନୁଏରୀ ଓ ଯୁଲାଇରେ ପ୍ରତ୍ୟେକ ନଗରର ତାପ-ଶୈତ୍ୟ-ପରିମାଣ ସ୍ଥିର କର । ଜାନୁଏରୀ ତାପ ଓ ଯୁଲାଇ ତାପ ମଧ୍ୟରେ ପ୍ରଭେଦ ବୁଝି ନିଅ ।

କର୍କଟକ୍ରାନ୍ତି ଓ ମକରକ୍ରାନ୍ତି ମଧ୍ୟବର୍ତ୍ତୀ ଭାଗକୁ 'ଗ୍ରୀଷ୍ମ-ମଣ୍ଡଳ' (Torrid zone) ବୋଲାଯାଏ । ନାମରୁ ଜଣାଯାଉଛି, ପୃଥିବୀର ଏହି ଭାଗଟି ଅତିଶୟ ଗରମ । କୌଣସି ସ୍ଥାନ ସମୁଦ୍ର ନିକଟରେ ଥିଲେ କିମ୍ବା ଉଚ୍ଚ ହୋଇଥିଲେ ଅଥବା ପ୍ରଚୁର ବର୍ଷା ପାଉଥିଲେ, ତାହା ଶୀତଳ ରହେ । ଏ ଧରଣର ସ୍ଥାନ ବ୍ୟତୀତ, ଅନ୍ୟାନ୍ୟ ଭୂଭାଗ ଗରମ ରହେ । ଜାଣିଛ, ସାହାରା, ଆରବ, ଥାର୍ ଇତ୍ୟାଦି ମରୁଭୂମି ସମୁଦ୍ରଠାରୁ ଦୂରରେ ଅଛି ଏବଂ ବୃଷ୍ଟି ପାଏ ନାହିଁ । ଅତଏବ ଏ ସକଳ ସ୍ଥାନ ଅତ୍ୟନ୍ତ ଗରମ । ୱରିଦିନେ ଉତ୍ତର ଭାରତରେ ତାପ ବେଶି ରହେ; ତେବେ ଜୁନ୍ ମାସ ପରେ ମୌସୁମୀ-ବର୍ଷା ଯୋଗେ ପ୍ରଦେଶଟି ଶୀତଳ ହୋଇ ଯାଏ । ଅନେକାନ୍-ପ୍ଲାବିତ ପ୍ରଦେଶଟି ଗ୍ରୀଷ୍ମମଣ୍ଡଳରେ ଅବସ୍ଥିତ ହେଲେହେଁ, ଅତ୍ୟଧିକ ବର୍ଷା ଓ ଅରଣ୍ୟାନୀ ଯୋଗେ, ବେଶି ଗରମ ରହେ ନାହିଁ । ସିଂହଳ, ମାଳୟ ଦ୍ୱୀପପୁଞ୍ଜ ଓ ପଶ୍ଚିମ-ଭାରତ ଗ୍ରୀଷ୍ମ-

ମଣ୍ଡଳରେ ଅଛି ସତ; କିନ୍ତୁ ସମୁଦ୍ର ନିକଟରେ ଥିବାରୁ ଏବଂ ପ୍ରବଳ ବର୍ଷା ହେବାରୁ ସେଠାରେ କମ୍ ତାପ ଅନୁଭୂତ ହୋଇଥାଏ । ସମୁଦ୍ରଠାରୁ ଦୂରରେ ଥିବା ଭୂଭାଗ ଖରାଦିନେ ବଡ଼ ଗରମ ଏବଂ ଶୀତ ଋତୁରେ ବଡ଼ ଥଣ୍ଡା ରହେ । ଦୃଷ୍ଟାନ୍ତ—ଉତ୍ତର-ଭାରତ । ଖରାଦିନେ ଲାହୋର୍ ନଗରର ତାପ ଫା ୧୦୦ ଡିଗ୍ରୀରୁ ଅଧିକ ରହେ ଏବଂ ଶୀତ ଦିନେ ସେଠାର ତାପ ଫା ୫୫ ଡିଗ୍ରୀକୁ ଖସି ପଡ଼େ ।

ପ୍ରଶ୍ନ:—ପୃଥିବୀର କେଉଁ କେଉଁ ଅଞ୍ଚଳ ଭାରି ଗରମ ରହେ ? କାହିଁକି ରହେ ?

ଯୁଲାଇ ମାସରେ ଉତ୍ତର ଗୋଲାର୍ଦ୍ଧ ବେଶି ଗରମ ରହେ କାହିଁକି ?

'ଫାରେନ୍‌ହାଇଟ୍ ତାପମାନଯନ୍ତ୍ର' ବୋଇଲେ କଣ ?



## ୪ ପୃଥିବୀର ପ୍ରଧାନ ପ୍ରାକୃତିକ ବିଭାଗ ସକଳ

ସମଗ୍ର ପୃଥିବୀକି ନିମ୍ନଲିଖିତ ବୃହତ୍ ପ୍ରାକୃତିକ ବିଭାଗରେ ବିଭକ୍ତ କରି ଯାଇ ପାରେ:—

୧ ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟ: –

ବିଷୁବରେଖା ନିକଟସ୍ଥ ଗ୍ରୀଷ୍ମମଣ୍ଡଳରେ ଘାସବୃକ୍ଷପୂର୍ଣ୍ଣ ନିବିଡ଼ ଅରଣ୍ୟ ଅବସ୍ଥିତ । ଏ ଅରଣ୍ୟରେ ପ୍ରଚୁର ବୃଷ୍ଟି ହୁଏ, ଖୁବ୍ ତାପ ବି ଅନୁଭୂତ ହୁଏ, ଅର୍ଥାତ୍ ଏଠାରେ ତାପ ଯେତିକି, ଆର୍ଦ୍ରତା ସେତିକି । ଏଠା ଅରଣ୍ୟର ବୃକ୍ଷମାନଙ୍କୁ 'ଚିରହରିତ୍ ଉଦ୍ଭିଦ' (evergreens) କହାଯାଏ; କାରଣ ଏ ସମସ୍ତ ବୃକ୍ଷରେ ବର୍ଷତମାମ ପତ୍ର, ପୁଷ୍ପ ଓ ଫଳ ଥାଏ । ବର୍ଷତମାମ ଏ ଭୂଭାଗରେ ବର୍ଷା ହୁଏ, ଗଛର ପତ୍ର ପତ୍ର ଓ ଡାଳ ପଡ଼ି ଫଳବତୀ ହୁଏ । ଏଣୁ ଏଠାରେ ବୃକ୍ଷଲତା ଜନ୍ମି ଅଞ୍ଚଳ

ବଢ଼େ । ଆଫ୍ରିକାରେ, ବିଷୁବରେଖାର ଉଭୟ ପାର୍ଶ୍ୱରେ ଏ ଭଳି ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟ ଦେଖାଯାଏ । ଆଫ୍ରିକାର ପୂର୍ବୋପକୂଳ [ମୋମ୍ବାସାଠାରୁ ନେଟାଲ୍ ଯାଏଁ], ମାଡ଼ାଗାସ୍କାର୍ ଉପକୂଳ ଓ ଗିନି-ଉପକୂଳ ଅରଣ୍ୟାବୃତ । ଦକ୍ଷିଣ ଆମେରିକାର ଗ୍ରୀଷ୍ମମଣ୍ଡଳୀୟ ଚିରହରିତ୍ ଆମେଜାନ୍-ଅରଣ୍ୟ ସମ୍ବନ୍ଧରେ ଆଗେ ପଢ଼ିଅଛ । ବୃଷ୍ଟିମୟ ପୂର୍ବ-ଭାରତଦ୍ୱୀପ ପୁଞ୍ଜରେ (East Indies) ମଧ୍ୟ ଗ୍ରୀଷ୍ମମଣ୍ଡଳୀୟ ବନ ଦେଖାଯାଏ । ଏ ଭୂଭାଗର ପ୍ରଧାନ ବ୍ୟବସାୟ କୃଷି ଓ ଶିକାର । ଏଠା ଜଳବାୟୁ ୟୁରୋପୀୟମାନଙ୍କ ସ୍ୱାସ୍ଥ୍ୟର ଅନୁକୂଳ ନୁହେ ।

୨ ଗ୍ରୀଷ୍ମମଣ୍ଡଳୀୟ ତୃଣଭୂମି (savannahs):—

ଉପରୋକ୍ତ ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟାନୀର ପ୍ରାନ୍ତ ଭାଗରେ ଏ ତୃଣଭୂମି ଅବସ୍ଥିତ । ଏ ଭାଗରେ ଖରାଦିନେ ପ୍ରଚଣ୍ଡ ଖରା ହୁଏ, ବର୍ଷାଦିନେ ମାତ୍ର ପ୍ରବଳ ବୃଷ୍ଟି ପଡ଼େ । ଅତଏବ ଏଠାରେ ନିବିଡ଼ ବନ-ଜଙ୍ଗଲ ଆଦୌ ଦେଖା ଯାଏ ନାହିଁ । ଏଠାରେ ସ୍ଥାନେ ସ୍ଥାନେ—ବିଶେଷତଃ ଆର୍ଦ୍ର ବା ଜଳୁଆ ନିମ୍ନଭୂମିରେ—ଅତ୍ୟଳ୍ପ ମାତ୍ର ବୃକ୍ଷ ଜନ୍ମେ; କିନ୍ତୁ ବର୍ଷାଋତୁର ପ୍ରଚୁର ବୃଷ୍ଟିପାତ ଯୋଗେ ଏଠାର ତୃଣ ଉଚ୍ଚଳ ବଢ଼ି ମଞ୍ଜି ଧରେ—ଖରାଦିନେ ଶୁଖି ପଡ଼େ । ଆଫ୍ରିକା, ଦକ୍ଷିଣ ଆମେରିକା ଓ ଅଷ୍ଟ୍ରେଲିଆରେ ଏପରି ତୃଣଭୂମି ଢେର ଅଛି । ଏ କଥା ଆଗେ ପଢ଼ିଛ । ଦ: ଆମେରିକାର ତୃଣଭୂମିକି 'llanos' କହନ୍ତି, ଜାଣିଛ ।

୩ ଗ୍ରୀଷ୍ମମଣ୍ଡଳୀୟ ମରୁଭୂମି:—

ଏ ଭୂଭାଗ ଅତିରିକ୍ତ ଗରମ ଓ ଶୁଷ୍କ । ଫଳବତୀ ମରୂଦ୍ୟାନ ଭିନ୍ନ, ଏଠାର ଅନ୍ୟ କୌଣସି ଭାଗରେ ଲୋକେ ବାସ କରନ୍ତି ନାହିଁ । ଏ ବିଷୟ ୪ର୍ଥ ଭାଗର ୨ୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

୪ ସମଶୀତୋଷ୍ଣ ତୃଣଭୂମି:—

ସମଶୀତୋଷ୍ଣ ମଣ୍ଡଳର ଏ ସମସ୍ତ ସମତଳ ତୃଣଭୂମିରେ ଆବୃତ । ଏଠାରେ ଅତିବୃଷ୍ଟି କିମ୍ବା ଅନାବୃଷ୍ଟି ଘଟେ ନାହିଁ—ପ୍ରଧାନତଃ ଦୀର୍ଘ ଗ୍ରୀଷ୍ମଋତୁରେ ଯାହା କିଛି ବର୍ଷା ହୋଇଥାଏ । ଏସିଆର କାସ୍‌ପିଅନ ସାଗରର ପୂର୍ବ ଭାଗରେ ଏ ଭଳି ତୃଣଭୂମି (steppes) ବିସ୍ତୃତ । ଉଃ ଆମେରିକାର ମଧ୍ୟଭାଗରେ ତୃଣଭୂମି [Prairies] ଦେଖାଯାଉଛି । ତୁମେମାନେ ଜାଣ, ଦଃ ଆମେରିକାର ତୃଣଭୂମିକୁ 'Pampas' କହା-ଯାଏ । ଅଷ୍ଟ୍ରେଲିଆରେ, ମାରେ ନଦୀର ଦୁଇ ପାର୍ଶ୍ୱରେ ଥିବା ତୃଣ-ଭୂମିରେ ମେଷପାଳନ ହୁଏ । ଏସିଆ, ଦଃ ଆମେରିକା ଓ ଅଷ୍ଟ୍ରେଲିଆର ତୃଣଭୂମି ସବୁ ବର୍ତ୍ତମାନ ପ୍ରବା ଚୋଚରଭୂମିଂ ରୂପେ ବ୍ୟବହୃତ ହେଉ-ଅଛି । ଉଃ ଆମେରିକାର prairiesରେ ଏବଂ ୟୁରୋପର ପ୍ରାୟ ସକଳ ତୃଣଭୂମିରେ କୃଷି କରା ଯାଉଅଛି ।

୫ ସମଶୀତୋଷ୍ଣ ଅରଣ୍ୟ:—

ସମଶୀତୋଷ୍ଣ ମଣ୍ଡଳରେ ନାନା ରକମ ବନ ଜଙ୍ଗଲ ଦେଖାଯାଏ । ଉତ୍ତର ସମଶୀତୋଷ୍ଣ କଟିବନ୍ଧରେ, ଉଃ ଆମେରିକା, ୟୁରୋପ ଓ ଏସିଆର ଉତ୍ତର ଭାଗରେ ଶୁଣ୍ଡାକୃତିଫଳବାହୀ-ବୃକ୍ଷମୟ ଅରଣ୍ୟ (Cone-bearing forests) ବିସ୍ତାରିତ । ଏ ଭାଗରେ ଶୀତଦିନେ ଭାରି ଶୀତ ହୁଏ । ଗ୍ରୀଷ୍ମଋତୁ ଖୁବ୍ ଛୋଟ, ବର୍ଷା କଦାଚିତ କମ୍ ହୋଇଥାଏ । ଏଠାର ଅଧିକାଂଶ ବୃକ୍ଷର ପତ୍ର କ୍ଷୁଦ୍ର, ସୂଚୀ ସଦୃଶ, ଫଳ କର୍କଶ ଶୁଣ୍ଡା-କୃତି । Firs,pines ଓ larches ହେଉଛି cone-bearing ବୃକ୍ଷ । ଏହି ବନ୍ୟ ଭାଗର ଉତ୍ତର ପ୍ରାନ୍ତରେ ଅତ୍ୟଳ୍ପ ଛୋଟ ଗଛ ଦେଖା ଯାଏ ଏବଂ ଦକ୍ଷିଣରେ ଥିବା ବଡ଼ ବଡ଼ deal ଗଛରୁ କୋମଳ ଗଣ୍ଡି ବାହାରେ ।

୬ ଭୂମଧ୍ୟସାଗରୋପକୂଳ:—

ଭୂମଧ୍ୟସାଗରତୀରରେ ପ୍ରଧାନତଃ ଶୀତଦିନେ ବର୍ଷା ହୁଏ, ବେଶିବୃକ୍ଷ ଲତା ଉଠିଥାଏ— ଖରାଦିନେ ଖୁବ୍ ଶୁଷ୍କ, ଗରମ ରହେ ।

୭ ତୁନ୍ଦ୍ରା ଓ ବରଫ-ମରୁଭୂମି:—

ଉ: ଆମେରିକା, ୟୁରୋପ ଓ ଏସିଆର ସମସ୍ତ ଉତ୍ତର-ମହା-ସାଗରୋପକୂଳକୁ ଅନୁର୍ବର ତୁନ୍ଦ୍ରାରେ (tundras) ଆଚ୍ଛନ୍ନ। ଏ ଭାଗରେ ଗ୍ରୀଷ୍ମକାଳ ବ ଶୀତଳ ରହେ, ଶୀତଋତୁ ଅତ୍ୟନ୍ତ ଶୀତଳ ହୋଇଥାଏ। ଏଠାରେ ବର୍ଷା ଅପେକ୍ଷା ଅଧିକ ବରଫ ପଡ଼େ, ବର୍ଷତମାମ ଭୂମି ଓ ଭୂଗର୍ଭ [ପ୍ରଖର ଶୈତ୍ୟ ପ୍ରଭାବରେ] ଘନୀଭୂତ ହୋଇ ରହେ। ଏଣୁ ଏ ଭୂଭାଗରେ ଗଭୀର ବା ଲମ୍ବା ଚେର ଥିବା ଗଛ ଆଦୌ ଉଠେ ନାହିଁ—ଠାଏଁ ଠାଏଁ କେତୋଟି ମାତ୍ର ବାମନ ଗୁଳ୍ମ ଦେଖା ଯାଏ। ଏଠାର ଗ୍ରୀଷ୍ମଋତୁ ଖୁବ୍ ଅଳ୍ପକାଳସ୍ଥାୟୀ—ଏ ଦିନେ ବରଫ ତରଳିବା-କ୍ଷଣି ଭୂମି ଶୈବାଳ [moss] ରେ ଆଚ୍ଛାଦିତ ହୋଇ ଯାଏ। ବଲ୍ଗା-ହରିଣମାନେ ଏହା ଖାଇ ବଞ୍ଚନ୍ତି। ଦକ୍ଷିଣ ଭାଗରେ ତୁନ୍ଦ୍ରା Coni-ferous ଅରଣ୍ୟ ସହିତ ମିଳିତ ହୋଇ ଅଛି। କୁମେରୁ ମଣ୍ଡଳ ଚତୁର୍ଦ୍ଦିଗରେ ଭୂମି-ଜାତ ବୃକ୍ଷଲତା ଆଦୌ ନାହିଁ। ତାହା ଏକ ବରଫ-ମରୁଭୂମି (ice-desert). ଗ୍ରୀନ୍‌ଲ୍ୟାଣ୍ଡ୍‌ର, ତାହାର ଦକ୍ଷିଣୋପକୂଳ ଭିନ୍ନ, ବରଫ-ମରୁଭୂମିମୟ। ମାଛ ଧରିବା ଏଠାର ଏକ ମାତ୍ର ବ୍ୟବସାୟ।

୮ ପାର୍ବତ୍ୟ ଭୂଭାଗ:—

ଏ ଭୂଭାଗର ବିଭିନ୍ନ ଉଚ୍ଚତା ଅନୁସାରେ ବିଭିନ୍ନ ଜଳବାୟୁ ଅନୁଭୂତ ହୁଏ, ବିଭିନ୍ନ ଉଦ୍‌ଭିଦ ଜନ୍ମେ ଏବଂ ବିଭିନ୍ନ ଉତ୍ପନ୍ନ ପଦାର୍ଥ ମିଳେ। ଗ୍ରୀଷ୍ମମଣ୍ଡଳରୁ ବାହାରି କ୍ରମେ ମେରୁ ମଣ୍ଡଳ ପ୍ରତି ଯାତ୍ରା କରିବାବେଳେ ମାର୍ଗରେ ଯେତେ ପ୍ରକାର ବୃକ୍ଷଲତା ଦେଖାଯାଏ, ହିମାଳୟର ପାଦ ଦେଶରୁ କ୍ରମେ ଉପରକୁ ଉଠିବାବେଳେ ସେତେ ରକମ ବୃକ୍ଷଲତା ଦେଖା ଯାଇ ପାରିବ। ମେଷପାଳନ ଏଠାର ପ୍ରଧାନ ବ୍ୟବସାୟ। ଉଚ୍ଚତର ଚାରଣଭୂମିସବୁ ଖରାଦିନେ, ନିମ୍ନତର ଚରାଭୂମି-ସକଳ ଶୀତଦିନେ କାମରେ ଲାଗିଥାଏ। ପାର୍ବତ୍ୟ ଭାଗର ସମସ୍ତ

ନିମ୍ନଭୂମି ଉଷ୍ଣ, ଫଳବତୀ ଓ କୃଷି-ଅଧୀନ । ଏ ଭୂଭାଗରେ ଗମନାଗମନର ସେତେ ସୁବିଧା ନାହିଁ ଏବଂ ଏଠାର ସମସ୍ତ ଅଞ୍ଚଳ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହି ଅଛି । ଏଣୁ ଏଠା ଅଧିବାସିମାନଙ୍କର ଆର୍ଥିକ ବା ବୈଷୟିକ ଉନ୍ନତି ହୋଇ ପାରୁ ନାହିଁ ।

୯ ମାଳଭୂମି:—

ପୃଥିବୀର ଯେଉଁ ଭାଗରେ ମରୁଭୂମି ଅପେକ୍ଷା କମ୍ ତାପ ଅନୁଭୂତ ହୁଏ, ସେଇ ଭାଗରେ ମାଳଭୂମି, ଉଚ୍ଚଭୂମି ଓ ଅବବାହିକା ପ୍ରସାରିତ । ପୃଥିବୀର ବିଭିନ୍ନ ଅଞ୍ଚଳରେ ଏ ସବୁ ଦେଖାଯାଏ । ଏ ସମସ୍ତ ସ୍ଥାନରେ ଛୋଟ ଲତା ଗୁଳ୍ମ ଜାତ ହୁଏ, ମେଷପାଳକବ୍ୟବସାୟୀମାନେ ବାସ କରନ୍ତି ଏବଂ ନଦୀ ବା ବରଫ-ପୁଷ୍ଟ ସ୍ରୋତ ନିକଟରେ କୃଷକମାନେ ରହନ୍ତି । ଏସିଆ ଓ ଆଫ୍ରିକାମାଳଭୂମିବାସୀ ମେଷପାଳକମାନେ ଭ୍ରମଣକାରୀ ବା nomadic; କିନ୍ତୁ ଅମେରିକାର ମେଷପାଳକମାନେ ସ୍ଥାୟୀ ଅଧିବାସୀ (settled).

୧୦ ଉତ୍ତର ମହାଦେଶସମୂହର ପୂର୍ବପ୍ରାନ୍ତ:—

ଏଠାର ଜଳବାୟୁ ସମଶୀତୋଷ୍ଣ । ଖରାଦିନେ ବେଶି ଉଦ୍ଭିଦ ଜାତ ହୁଏ । ଏ ସମସ୍ତ ଭାଗରେ କୃଷି ହୁଏ ।

ପ୍ରଶ୍ନ:— ତୃଣଭୂମିସକଳ ବିଭିନ୍ନ ମହାଦେଶରେ କି କି ନାମରେ ପରିଚିତ?
ତୁନ୍ଦ୍ରାରେ ବଡ଼ ଗଛ ଉଠେ ନାହିଁ କାହିଁକି ?



## ପୃଥିବୀର ଉତ୍ପନ୍ନ ଦ୍ରବ୍ୟ

### ୬ [କ] ବନ୍ୟ ଭୂଭାଗ

ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟର ବିଷୟ ପୂର୍ବ ପରିଚ୍ଛେଦରେ କହା ଯାଇ ଅଛି । ତାଲି ଏଠାର ଆଦର୍ଶପ୍ରକୃତିକ ବୃକ୍ଷ । ଏହା ନାନା ରକମ । ଏଠାରେ

ଖୁବ୍ ଦୃଢ଼ କାଷ୍ଠ, ବାଉଁଶ, ରବର୍-ଉତ୍ପାଦକ ବୃକ୍ଷ ଓ ବିବିଧ ଲତା ମିଳେ । ଏଠାର ବାଉଁଶ ଅତି ଶୀଘ୍ର ବଢି ଉଠେ । ଆଫ୍ରିକାର କଙ୍ଗୋ-ବନରେ ତାଳ, କନ୍ଦଅା, ଟୀକ୍, ଇବୋନ (ebony) ଓ ମାହୋଗାନ (mahogany) ଗଛ ଦେଖାଯାଏ । ଆମେଜାନ୍-ଅରଣ୍ୟର ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ ରବର । ସେଠାରେ ସହସ୍ରାଧିକ ଉପଯୋଗୀ ବୃକ୍ଷ ଲତା ଜାତହୁଏ ! ସମଶୀତୋଷ୍ଣ ଅରଣ୍ୟର ପ୍ରଧାନ ବୃକ୍ଷ:— Firs, pines ଓ larches. ଇଉରୋପରୁ ଆମ ଦେଶକୁ ଆମଦାନି ହେବା ଦିଅାସିଲାଇ ସବୁ deal କାଠରେ ତିଆରି । ଏ କାଠରେ ନାନା ପ୍ରକାର ପେଡ଼ି ଓ କାଗଜ-ମଣ୍ଡ ପ୍ରସ୍ତୁତ ହୋଇଥାଏ । ଉକ୍ତ ଗଛର ରସରେ ତାର୍ପିନ୍ (turpentine), ତାର୍ବୁ ବା ଅଲକାତରା [tar or pitch] ଓ ଝୁଣା [resin] ତିଆରି କରାଯାଏ । ହିମାଳୟର ଉଚ୍ଚତର ଶୀତଳ ଢାଲୁ ସ୍ଥାନରେ ଏ ଜାତି ବୃକ୍ଷ ଉଠେ । ନୀଲଗିରି ପାହାଡ଼ର ଉଚ୍ଚତମ ଭାଗରେ ମଧ୍ୟ ଏହା ଦେଖିବାକୁ ମିଳେ । ମଧ୍ୟ-ୟୁରୋପ, ଉତ୍ତର-ଅମେରିକାର ପୂର୍ବାର୍ଦ୍ଧ, ଜାପାନ୍, ନ୍ୟୁଜୀଲଣ୍ଡ ଓ ଅଷ୍ଟ୍ରେଲିଆର ଦକ୍ଷିଣ-ପୂର୍ବୋପକୂଳରେ ଥିବା ଉଷ୍ଣତର ଅରଣ୍ୟ ସମୂହରେ Oak, beech ଓ maple ଗଛ ଜାତ ହୋଇ ଥାଏ । ଏ ସବୁ ବନ coniferous ଅରଣ୍ୟର ଦକ୍ଷିଣରେ ଅବସ୍ଥିତ ।

ପ୍ରାୟ ଭାରତବର୍ଷ ହେଲା ଭୂମେମାନେ ବିଭିନ୍ନ ମହାଦେଶର ଉଦ୍ଭିଦ ଜାତି ସମ୍ବନ୍ଧରେ ପଢ଼ି ଆସୁଅଛ । ସେ କଥା ଏଠାରେ ପୁଣି ବୁଝାଇ କହିବା ଅନାବଶ୍ୟକ । ତେବେ କେଉଁ ଜଳବାୟୁରେ କପରି ଉଦ୍ଭିଦ ଜନ୍ମେ ଏବଂ କି କି କୃଷିଜାତ ଦ୍ରବ୍ୟ ମିଳେ, ତାହାର ଆଭାସ ମାତ୍ର

| କଟିବନ୍ଧ | ଉତ୍ପନ୍ନ ଦ୍ରବ୍ୟ |
|---|---|
| ୧ ବିଷୁବରେଖା | ତାଳ, ନଡ଼ିଆ, କଦଳୀ, ବିବିଧ ମସଲା ଦ୍ରବ୍ୟ । |
| ୨ ଗ୍ରୀଷ୍ମମଣ୍ଡଳ | ତେନ୍ତୁଳି, ଆଖୁ, ବାଉଁଶ, ଖଜୁରି, କାଫି । |
| ୩ ଅର୍ଦ୍ଧ ଗ୍ରୀଷ୍ମମଣ୍ଡଳ | ଆଖୁ, କପା, Myrtle, laurel. |
| ୪ ଉଷ୍ଣ ସମଶୀତୋଷ୍ଣ ମଣ୍ଡଳ | ଚିର ହରିତ୍ ଉଦ୍ଭିଦ, ମକା, ଧାନ, ଦ୍ରାକ୍ଷା, ଲେମ୍ବୁ, କମଳା । |
| ୫ ଶୀତ ସମଶୀତୋଷ୍ଣ ମଣ୍ଡଳ | ଅଚିରସ୍ଥାୟୀ (deciduous) ବୃକ୍ଷ, ଗହମ, ଯବ, ଛଣି, ହୋଟ, ମସିନା । |
| ୬ ଅର୍ଦ୍ଧ ସୁମେରୁମଣ୍ଡଳ | ଦେବଦାରୁଜାତୀୟ ବୃକ୍ଷ, ଯବ, rye ଓ oat. |
| ୭ ସୁମେରୁମଣ୍ଡଳ | ଶୈବାଳ, (lichens), saxifrages ଓ ବାମନ ଗୁଳ୍ମ । |
| ୮ ମେରୁ ପ୍ରଦେଶ | ଅନୁର୍ବର—କୌଣସି ଉଦ୍ଭିଦ ଜନ୍ମେ ନାହିଁ । |

ପ୍ରଶ୍ନ:— ନୀଳଗିରି ପାହାଡ଼, ହିମାଳୟ ଓ ଜାପାନ୍‌ରେ କି କି ଉଦ୍ଭିଦ ଜନ୍ମେ ?

deal ଗଛର ଉପଯୋଗିତା ବୁଝାଇ ଦିଅ ?



## ୧୬ [ଖ] ତୃଣମୟ ଭୂଖଣ୍ଡ

ତୃଣଭୂମିର ଲୋକମାନେ ସାଧାରଣତଃ ଭ୍ରମଣଶୀଳ । ସେମାନେ ଜଳପାଇଁ ନଦୀତଟରେ ପର୍ଯ୍ୟଟନ କରିଥାନ୍ତି ଏବଂ କୂପାଦି ଖୋଜି ବୁଲନ୍ତି । ସେମାନଙ୍କର ନିର୍ଦ୍ଦିଷ୍ଟ ବାସଗୃହ ନାହିଁ—ତମ୍ବୁହିଁ ସେମାନଙ୍କର ଗୃହ । ଏଣୁ ପର୍ଯ୍ୟଟନ କରିବାବେଳେ ସେମାନେ ମୋଟା ବା ଭାରି ଜିନିସ ପତ୍ର ସଙ୍ଗେ ନେଇ ପାରନ୍ତି ନାହିଁ । ସେମାନଙ୍କର ଖାଦ୍ୟପାତ୍ର, ବାସନ ଇତ୍ୟାଦି

ଖୁବ୍ ଲଘୁ । ତୃଣଭୂମିର ଲୋକେ ଛେଳି, ମେଣ୍ଢା, ଗାଈ ଗୋରୁ, ଘୋଡ଼ା ଓ ଓଟ ପୋଷିଥାନ୍ତି ଏବଂ ଏ ସମସ୍ତ ପଶୁଠାରୁ ଉତ୍ପନ୍ନ ହେବା ପଦାର୍ଥସବୁ ବ୍ୟବହାର କରିଥାନ୍ତି । ସେମାନଙ୍କର ଜୀବିକା-ନିର୍ବାହ-ପଥ ସୁଗମ ନୁହେଁ । ସମୟ ସମୟରେ ଜଳ ଓ ଖାଦ୍ୟର ଅଭାବ, ବିବିଧ ରୋଗ ସେମାନଙ୍କପାଳିତ ପଶୁମାନଙ୍କୁ ନଷ୍ଟ କରି ପକାଏ—ଫଳରେ ସେମାନଙ୍କ ଜୀବିକାରେ ଗୁରୁ ବାଧା ପଡ଼େ ।

ମେଷପାଳକମାନେ ପଶୁଚର୍ମ ଓ ଲୋମରେ ବସ୍ତ୍ର, କମ୍ବଳ, ଆସନ ଇତ୍ୟାଦି ପଦାର୍ଥ ତିଆରି କରି ସେ ସମସ୍ତ ପଦାର୍ଥର ବିନିମୟରେ କୃଷି-ଜାତ, ଖଣିଜ ବା କଳତିଆରି ଦ୍ରବ୍ୟମାନ କିଣିଥାନ୍ତି । ସବୁବେଳେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଭ୍ରମଣ କରିବାରୁ ସେମାନଙ୍କର ସ୍ଥିର ସଂପତ୍ତି ନ ଥାଏ । ମେଷପଲ ବା ଗାଈଗୋଠହିଁ ସେମାନଙ୍କର ପ୍ରଧାନ ସଂପତ୍ତି ଜଳବାୟୁ-ପରିବର୍ତ୍ତନ ଓ ଚୋରଣଭୂମି-ଅନ୍ୱେଷଣହିଁ ସେମାନଙ୍କ ଭ୍ରମଣର ପ୍ରଧାନ କାରଣ । ସୃଷ୍ଟିର ପ୍ରଥମ ଅବସ୍ଥାରେ ମାନବ ଜାଣିଥିଲା କେବଳ ପଶୁଶିକାର, ପରେ ଶିଖିଲା ପଶୁପାଳନ । କୃଷି ହେଉଛି ତୃତୀୟ ଅବସ୍ଥା । ଆଜି କାଲି ପୃଥିବୀର ସମସ୍ତ ତୃଣଭୂମିର ଲୋକେ କୃଷିକାମ ଶିଖିଲେଣି; ସେମାନେ ଅଳ୍ପେ ଅଳ୍ପେ ସ୍ଥାୟୀ ବାସଗୃହ ଓ ସଂପତ୍ତି କରିବାକୁ ଆରମ୍ଭ କଲେଣି । ସେମାନେ ଜୀବନ୍ତ ପଶୁ, ବରଫ-ମଡ଼ା ବା ଲୁଣମଖା ମାଂସ, ଚମଡ଼ା, ଲୋମ ବିଭିନ୍ନ ଦେଶକୁ ପଠାନ୍ତି ଏବଂ ବଦଳରେ ନାନା ରକମ ପ୍ରସ୍ତୁତ ପଦାର୍ଥ ଓ ଖାଦ୍ୟଜିନିଷ ମଗାନ୍ତି । ଦକ୍ଷିଣ ଆମେରିକାର ପ୍ଲେଟନଦୀ ନିକଟସ୍ଥ ତୃଣଭୂମି, ଉତ୍ତର ଆମେରିକାର **prairies** ଓ ପଶ୍ଚିମ-ସମତଳ ଏବଂ ୟୁରୋପର **steppes**ରୁ ଢେର ପଶୁ-ଚର୍ମ ଓ ଲୋମ ଆଦାୟ କରାଯାଏ । ଯୁକ୍ତରାଜ୍ୟ, ଆର୍ଜେଣ୍ଟିନା ଓ କାନାଡା ବିଭିନ୍ନ ସ୍ଥାନକୁ ବହୁ ପରିମାଣରେ ଗୋରୁ ଓ ମାଂସ ରପ୍ତାନୀ କରିଥାଏ ।

ଖାଦ୍ୟଶସ୍ୟ (cereals) :—

ପୃଥିବୀର କେଉଁ ଅଞ୍ଚଳରେ କ କ ଶସ୍ୟ ଉତ୍ପନ୍ନ କରାଯାଏ, ତାହା ନିମ୍ନରେ ଦଆଗଲା ।

| ଶସ୍ୟ | ସ୍ଥାନ |
|---|---|
| ଗହମ | ଯୁକ୍ତରାଜ୍ୟ, ୟୁରୋପୀୟ-ରୁଷିଆ, ଫ୍ରାନ୍ସ ଓ ଭାରତ |
| ଯବ | ରୁଷିଆ, ଜର୍ମାନ, ଯୁକ୍ତରାଜ୍ୟ, ଅଷ୍ଟ୍ରିଆ, ହଙ୍ଗେରୀ ଓ ଭାରତ |
| rye | ରୁଷିଆ, ଜର୍ମାନ, ଅଷ୍ଟ୍ରିଆ, ହଙ୍ଗେରୀ, ଉତ୍ତର-ଆମେରିକା |
| oat | ରୁଷିଆ, ଜର୍ମାନ, ଯୁକ୍ତରାଜ୍ୟ, ବ୍ରିଟିଷ୍ ଦ୍ୱୀପପୁଞ୍ଜ |
| ମକା | ଅଷ୍ଟ୍ରିଆ, ହଙ୍ଗେରୀ, ଇଟାଲି, ଭାରତ, ରୁମାନିଆ, ଯୁକ୍ତରାଜ୍ୟ, ଆର୍ଜେଣ୍ଟିନା, ଦକ୍ଷିଣ-ଆଫ୍ରିକା |
| ଧାନ | ଜାପାନ, ଭାରତ ଓ ବର୍ମା, ଚୀନ, ଜାଭା, ମିଶର, ଯୁକ୍ତରାଜ୍ୟ, |
| ଦ୍ରାକ୍ଷା | ପ୍ରଧାନତଃ ଭୂମଧ୍ୟସାଗରୋପକୂଳ:— ଫ୍ରାନ୍ସ, ଇଟାଲି, ସ୍ପେନ୍, ପୋର୍ତୁଗଲ୍, ଅଷ୍ଟ୍ରିଆ, ହଙ୍ଗେରୀ, ଜର୍ମାନ ଓ ଅଲ୍‌ଜିରିଆ |
| ଆଖୁ | West Indies, ଭାରତ, ଜାଭା, ଦ: ଆମେରିକା |

ପ୍ରଶ୍ନ:— ତୃଣଭୂମିର ଲୋକମାନେ କିପରି ଜୀବନ ଚଳାନ୍ତି ?

ଧାନ ଓ ଗହମ ପୃଥିବୀର କେଉଁ କେଉଁ ଅଞ୍ଚଳରେ ବେଶି ମିଳେ ?



## ୬ ଶିକାର ଓ ମତ୍ସ୍ୟବ୍ୟବସାୟ

ବନଜଙ୍ଗଲରେ, ତୁନ୍ଦ୍ରାଭୂମିରେ ଓ ତୃଣଭୂମିରେ ଶିକାର ହୋଇଥାଏ । ସାଧାରଣରେ ଶିକାରୀମାନେ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଶିକାର ଖୋଜି ଯାଆନ୍ତି । ସେମାନଙ୍କର ଜୀବନଧାରଣ ଅନେକ ସମୟରେ ବିପଦସଙ୍କୁଳ, ଜୀବିକାନିର୍ବାହମାର୍ଗ କଣ୍ଟକିତ ହୋଇ ପଡ଼େ । ଏପରି ଅବସ୍ଥାରେ ଶିକାରୀଜାତିର ବିଶେଷ କାୟିକ ବଳ, ପ୍ରଗାଢ଼ ପରିଶ୍ରମ ଓ ଚଞ୍ଚଳତା ନ ଥିଲେ ଚଳିବ ନାହିଁ । ସେମାନେ ବି ଏକ ପ୍ରକାର ଭ୍ରମଣଶୀଳ ସମ୍ପ୍ରଦାୟ । ଶିକାରୀମାନେ ଅନେକ ସମୟରେ ପରସ୍ପରଠାରୁ ପୃଥକ୍ ହୋଇ ରହନ୍ତି । ସ୍ୱାର୍ଥକୁ ନେଇ ସେମାନଙ୍କ ମଧ୍ୟରେ ସାଧାରଣତଃ ବିଦ୍ୱେଷ, ଶତ୍ରୁତା ଜନ୍ମିଥାଏ ଏବଂ ସେମାନଙ୍କ ପାଖରେ ସର୍ବଦା ଅସ୍ତ୍ରଶସ୍ତ୍ର ରହୁଥିବାରୁ କେବେ କେବେ ପରସ୍ପର ମଧ୍ୟରେ ଲଢ଼ାଇ ବି ହୋଇଥାଏ । ଶିକାରୀଜାତି ଯୁଦ୍ଧପ୍ରିୟ । ଉନ୍ନତ ଜାତିର ଶିକାରୀମାନେ ଲୋମଯୁକ୍ତ ପଶୁ ବଧ କରି ଚର୍ମ-କାରବାର ଚଳାନ୍ତି । ପୃଥିବୀର ସମସ୍ତ ପାର୍ବତ୍ୟ ଅଞ୍ଚଳରେ ଶିକାରୀମାନେ ଦେଖାଯାଆନ୍ତି । ରୁଷିଆ ସାମ୍ରାଜ୍ୟ ଓ କାନାଡ଼ାରେ coniferous ଜଙ୍ଗଲ ବିସ୍ତୃତ ଅଛି; ଏଣୁ ଏ ଦୁଇ ଦେଶରୁ ପଶୁଲୋମ ଢ଼େର ରପ୍ତାନି ହୋଇଥାଏ ।

ମାଛ ଗୋଟିଏ ପ୍ରଧାନ ଖାଦ୍ୟ । ଏଣୁ ମାଛ ଧରିବା ଏକ ସାଧାରଣ ବ୍ୟବସାୟ । ନଦୀ, ହ୍ରଦ, ସମୁଦ୍ର ଓ ଅନ୍ୟାନ୍ୟ ଜଳାଶୟ ନିକଟରେ ବାସକରିବା ଅନେକ ଲୋକ ମାଛ ଧରି ବଞ୍ଚନ୍ତି । ସମୁଦ୍ରୋପକୂଳର ଯେଉଁ ଭାଗ ଖୁବ୍ ନିମ୍ନ ଥାଏ, ସେଠାରେ ସମୁଦ୍ର-ମାଛ ଧରିବାର ବେଶ୍ ସୁବିଧାଜନକ । ପୃଥିବୀର ଅଳ୍ପ ଲୋକ ମାତ୍ର ଖାସ୍ ମତ୍ସ୍ୟ-ବ୍ୟବସାୟୀ । ଏସ୍କିମୋମାନେ ଗୋଟିଏ ପ୍ରସିଦ୍ଧ ମାଛଧରା ଜାତି । ଭୂମିଜନ୍ତୁ ଓ ଉଦ୍‌ଭିଦର ଖୁବ୍ ଅଭାବ ଯୋଗେ, ଖାଦ୍ୟସଂଗ୍ରହ ପାଇଁ ସେମାନଙ୍କୁ

ସମୁଦ୍ରରେ ଯାଇ ମାଛ ଧରିବାକୁ ହୋଇଥାଏ । ମତ୍ସ୍ୟ-ବ୍ୟବସାୟିମାନେ ମାଛ ଧରିବା ପାଇଁ ଅନେକ ସମୁଦ୍ର, ମହାସମୁଦ୍ର ଉପରେ ଯାତ୍ରା କରନ୍ତି—ଫଳତଃ କେବେ କେବେ ସେମାନେ ନୂତନ ବାସସ୍ଥାନ ଆବିଷ୍କାର କରିଥାନ୍ତି । ମାଲୟ ଉପଦ୍ୱୀପ ଓ ମାଲୟ ଦ୍ୱୀପପୁଞ୍ଜର ଲୋକ-ମାନେ ପ୍ରସିଦ୍ଧ ମତ୍ସ୍ୟ-ବ୍ୟବସାୟୀ । ସେଠାର ଅନେକ ଲୋକ ଏ ବ୍ୟବସାୟ-କ୍ଷେତ୍ରରେ ମାଡ଼ାଗାସ୍କାର୍ ଓ ପଲିନେସିଆରେ ଯାଇ ବାସ କରୁଅଛନ୍ତି । ସ୍କାଣ୍ଡିନେଭିଆର ଲୋକେ ମଧ୍ୟ ମାଛ ଧରନ୍ତି । ଅନୁମିତ ହୁଏ ଯେ, କଲମ୍ବସ୍ ଅମେରିକା ଆବିଷ୍କାର କରିବାର ପ୍ରାୟ ୫୦୦ ବର୍ଷ ପୂର୍ବେ ଏ ଦୁଇ ଦେଶର ଲୋକମାନେ ମାଛ ପାଇଁ ଉତ୍ତର ଅମେରିକାକୁ ଯାଇ ଥିଲେ ।

ସଭ୍ୟ, ଶିକ୍ଷିତ ଜାତିମାନଙ୍କ ମଧ୍ୟରେ ମାଛ ଧରିବା ଗୋଟିଏ ସ୍ୱତନ୍ତ୍ର ବ୍ୟବସାୟ ହୋଇ ଉଠି ଅଛି । ସେମାନେ ସମୁଦ୍ରରେ ବହୁ ଦୂର ଯାତ୍ରା କରି ମାଛ ଧରନ୍ତି, ମାଛ ସବୁ ଜାହାଜରେ ଲଦି ଫେରନ୍ତି ଏବଂ ରେଳ-ସଡ଼କ ଯୋଗେ ବଡ଼ ବଡ଼ ନଗରମାନଙ୍କୁ ପଠାନ୍ତି । ସେମାନେ ମାଛ ଶୁଖାଇ, ସେଥିରେ ଲୁଣ ବା ବରଫ ମଡ଼ାଇ ଏବଂ ଟିଣରେ ଭରତି କରି ପୃଥିବୀର ବିଭିନ୍ନ ଅଞ୍ଚଳକୁ ପଠାଇ ଥାନ୍ତି ।

Cod ଓ herring ମାଛ ଅତି ମୂଲ୍ୟବାନ୍ । ଏ ଦୁଇ ମାଛ ସ୍କାଣ୍ଡିନେଭିଆ ଓ ନ୍ୟୁ ଫାଉଣ୍ଡ୍‌ଲାଣ୍ଡ୍‌ର ତଟରେ ବେଶି ମିଳେ । ନଈ-ମାଛ ମଧ୍ୟରେ salmon ପ୍ରଧାନ । ଉତ୍ତର ଅମେରିକାର ପଶ୍ଚିମ ଭାଗରେ ଥିବା ନଦୀମାନଙ୍କରେ ବେଶି ସାମନ୍ ମାଛ ଧରାଯାଏ । କଲମ୍ବିଆ ଓ ଫ୍ରେଜେର୍ ନଦୀରେ ଏବଂ ଆଲାସ୍କାର ସମସ୍ତ ନଦୀରେ ଏ ମାଛ ଅଧିକ ମିଳେ ।

ପୃଥିବୀର ପ୍ରଧାନ ମାଛ-ଆଡ୍ଡା ଅଗଭୀର ସମୁଦ୍ରରେହିଁ ଦେଖା ଯାଏ । ନ୍ୟୁଫାଉଣ୍ଡଲାଣ୍ଡ୍ ଉପକୂଳର ଏବଂ କାନାଡ଼ାର St Law-

rence—ମୁହାଣ ନିକଟରେ ଥିବା ମାଛ-ଅଡ୍ଡା ସର୍ବପ୍ରଧାନ । ସ୍କଟ୍-ଲଣ୍ଡର ଉତ୍ତର ସାଗର (North sea) ହେଉଛି ଅନ୍ୟତମ ମତ୍ସ୍ୟ-ଧାରଣ-କେନ୍ଦ୍ର । ଏଠାରେ କେଉଁଟମାନେ ଶତାଧିକ ଜାହାଜ ଓ ନୌକାରେ ବସି ଦିନ ରାତି ମାଛ ଧରନ୍ତି ଏବଂ ଏ ସବୁ ଗ୍ରେଟ୍ ବ୍ରିଟେନ୍‌ର ବଜାରକୁ ଅଣାଯାଏ । ଜାପାନ୍ ଚତୁର୍ଦ୍ଦିଗସ୍ଥ ଅଗଣ୍ଡିର ସାଗର ଏସିଆର ପ୍ରଧାନ ମାଛ-ଅଡ୍ଡା । ଭାରତର ମାନ୍ଦ୍ରାଜ, ତ୍ରିବାଙ୍କୋଡ଼ ଓ ବୋମ୍ବାଇ ଉପକୂଳରେ ମାଛ ଧରା ହୁଏ । କିନ୍ତୁ ଭାରତର ମାଛ ବ୍ୟବସାୟ ଅଧିକ ଉନ୍ନତ ହୋଇ ପାରି ନାହିଁ । ବର୍ତ୍ତମାନ ଯୁକ୍ତରାଜ୍ୟ, ଗ୍ରେଟ୍ ବ୍ରିଟେନ୍ ଓ ରୁସିଆର ଲୋକେ ଅତ୍ୟଧିକ ପରିମାଣରେ ମାଛ ଧରି ଖୁବ୍ ଉନ୍ନତ ଧରଣର ବ୍ୟବସାୟ ଚଳାଉଁ ଅଛନ୍ତି ।

ପ୍ରଶ୍ନ:—ଶିକାରିମାନେ କିପରି ଜୀବିକା ନିର୍ବାହ କରନ୍ତି ?

ପୃଥିବୀର କେଉଁ ଭାଗରେ ନଈ-ମାଛ ବେଶି ମିଳେ ?



## ୭ [ଘ] ଆକରଖନନ ଓ କାରଖାନାସକଳ

ହଜାର ବର୍ଷ ହେଲା ମନୁଷ୍ୟ ଧାତୁ ବ୍ୟବହାର କରି ଆସୁଛି ସତ; କିନ୍ତୁ ଉନବିଂଶ ଶତାବ୍ଦୀରେହିଁ ଆକର-ଖନନ-ବ୍ୟବସାୟର ଖୁବ୍ ପ୍ରାଧାନ୍ୟ ବଢ଼ିଲା, ପ୍ରସାର ହେବାକୁ ଲାଗିଲା । ଏ ବ୍ୟବସାୟର ଅସ୍ତିତ୍ୱ ଓ ଉନ୍ନତି ଭୂତତ୍ତ୍ୱ ବା ପ୍ରାକୃତିକ ଅବସ୍ଥା ଉପରେ ସଂପୂର୍ଣ୍ଣ ନିର୍ଭର କରେ ନାହିଁ । ପ୍ରାକୃତିକ ଅବସ୍ଥା ଅନୁକୂଳ ଥିଲେହେଁ ମାନବର ସାଧନା ବିନା ଆକରଖନନ ହୋଇ ନ ପାରେ ।

ଆକର-ଖନନରେ ପ୍ରଧାନତଃ କୋଇଲା ଇନ୍ଧନ ବା ଲଗୁଥିଣି (fuel) ରୂପେ ବ୍ୟବହୃତ ହୁଏ । ଚୀନା, ଯୁକ୍ତରାଜ୍ୟ, ଜର୍ମନି, କାନାଡ଼ା, ଅଷ୍ଟ୍ରେଲିଆ ଓ ବ୍ରିଟିଶ୍ ଦ୍ୱୀପପୁଞ୍ଜରେ ଅତ୍ୟଧିକ ପରିମାଣରେ କୋଇଲା

ବ୍ୟବହାର କରାଯାଏ । କୋଇଲା ଛଡ଼ା, ସ୍ୱାଭାବିକ ବାଷ୍ପ (gas) ଓ ଖଣିଜ-ତୈଳ ମଧ୍ୟ ଉତ୍ପନ୍ନ ହୋଇଥାଏ । ଆଜି କାଲି ଖଣିଜତୈଳର ବ୍ୟବହାର ବେଶି । ଯୁକ୍ତରାଜ୍ୟ ଓ ରୁଷିଆ ଏହି ତୈଳ ସକାଶେ ପ୍ରସିଦ୍ଧ । ଯୁକ୍ତରାଜ୍ୟ, ଜର୍ମାନି ଓ ବ୍ରିଟେନ୍‌ରେ ବେଶି ଲୁହା ଖୋଳା ହୁଏ ପୃଥିବୀର ୩/୫ ସ୍ୱର୍ଣ୍ଣ ବ୍ରିଟିଶ୍ ସାମ୍ରାଜ୍ୟରେ ମିଳେ, ୧/୨ କୋଇଲା ଯୁକ୍ତରାଜ୍ୟରେ, ୧/୫ କୋଇଲା ବ୍ରିଟିଶ୍ ଦ୍ୱୀପପୁଞ୍ଜରେ ଓ ୧/୫ ଜର୍ମାନିରେ ବ୍ୟବହାର କରାଯାଏ । ଅଷ୍ଟ୍ରେଲିଆ ଓ ଆଲାସ୍କାରେ ବିଶେଷ ସ୍ୱର୍ଣ୍ଣ ମିଳେ । ଯୁକ୍ତରାଜ୍ୟ, ବ୍ରିଟିଶ୍ ଦ୍ୱୀପପୁଞ୍ଜ, ଜର୍ମାନି, ବେଲ୍‌ଜିଅମ୍‌ରେ କୋଇଲା ଓ ଲୁହାଖଣି ପାଖପାଖିରେ ଦେଖାଯାଏ । ଏଣୁ ଏହି ଦେଶମାନଙ୍କର ଲୁହା ବ୍ୟବସାୟ ଖୁବ୍ ଉନ୍ନତ । ଲୋକବହୁଳ ଓ ସାଗରୋପକୂଳ କେନ୍ଦ୍ରମାନଙ୍କରେ ମାର୍ବଲ୍ ପଥର, ସ୍ଲେଟ୍ ପଥର, granite, ଗେଗ୍ଗୁଟି ବା ଚୂନପଥର (limestone) ଓ ବାଲିପଥର (sandstone) ଖୋଳା ଯାଏ ।

ଲୋକେ କେବଳ ଶିକାର, ମତ୍ସ୍ୟ-ବ୍ୟବସାୟ, ପଶୁପାଳନ କିମ୍ବା କୃଷି ଦ୍ୱାରା ବଞ୍ଚନ୍ତି ନାହିଁ—ହାତରେ ବା କଳ କାରଖାନାରେ ଜିନିଷ ତିଆରି କରି ଓ ବାଣିଜ୍ୟ ଚଳାଇ ଜୀବିକା ନିର୍ବାହ କରିଥାନ୍ତି । ପ୍ରତ୍ୟେକ ପଲ୍ଲିରେ ମଧ୍ୟ ବଢେଇ, କମାର, ତନ୍ତୀ ଓ କୁମ୍ଭାର ଦେଖାଯାନ୍ତି । ଜିନିଷ ତିଆରି କରିବା ପାଇଁ ହତିଆର ଦରକାର । କଳ ବା ଯନ୍ତ୍ର ଦ୍ୱାରା ହତିଆରରେ ମନୁଷ୍ୟ ହାତ ଅପେକ୍ଷା ଶତ ଗୁଣ କାମ ହୋଇପାରେ । ପ୍ରତି ବର୍ଷ କେତେକ ନୂତନ କଳ ଉଦ୍ଭାବିତ ହେଉଅଛି । ଏହି ହତିଆର ଓ କଳ ଲୁହା ଓ ଇସ୍ପାତରେ ପ୍ରସ୍ତୁତ ହୁଏ । କଳ ଚଳାଇବାକୁ ମନୁଷ୍ୟ ବିଭିନ୍ନ ଶକ୍ତି ପ୍ରୟୋଗ କରିଥାଏ—ଚଞ୍ଚଳଗତି ଜଳ ବା ଜଳପ୍ରପାତ, ବାଷ୍ପ (steam), ତଡ଼ିତ୍ ଶକ୍ତି । ୧୮ ଶ ଶତାବ୍ଦୀରେ ଜଳପ୍ରପାତ ଶକ୍ତିରେ ବ୍ରିଟେନ୍‌ର ଲୋମ-କଳ ବ୍ୟବସାୟ ଚଳୁଥିଲା । ୧୯ ଶ ଶତାବ୍ଦୀରେ ବାଷ୍ପର ବ୍ୟବହାର ଆରମ୍ଭ ହେଲା । ବାଷ୍ପ ଉତ୍ପାଦନ କରିବା

ନିମନ୍ତେ କୋଇଲା ଦରକାର ହୁଏ । ଯେଉଁ ସ୍ଥାନରେ ଯଥେଷ୍ଟ କୋଇଲା, ଲୁହା ଓ ଅନ୍ୟାନ୍ୟ ଧାତୁ ଥାଏ, ସେଠାରେ ବେଶି କଳ କାରଖାନା ଦେଖାଯାଏ । ସକଳ ପ୍ରକାର ଯନ୍ତ୍ର ବାଷ୍ପୀୟ ଏଞ୍ଜିନ୍ (steam engine) ଦ୍ୱାରା ଚାଳିତ ହୁଏ । ଏହିଳି ବିଭିନ୍ନ କଳ ବା କାରଖାନାରେ କପା, ପାଟ, ଲୋମର ବସ୍ତ୍ର, ଖୋଟ, ଲୁହା, କାଠ, ଚର୍ମ ଇତ୍ୟାଦିର ପଦାର୍ଥ ପ୍ରସ୍ତୁତ ହୋଇ ଥାଏ । ବିଂଶ ଶତାବ୍ଦୀର ଆରମ୍ଭରେ ତଡ଼ିତ୍‌ଶକ୍ତି (electricity) ଆବିଷ୍କୃତ ହେଲା । ଜଳପ୍ରପାତ, କୋଇଲା-ବାଷ୍ପ, ତୈଳ ବା କୋଇଲା-ଚାଳିତ ଏଞ୍ଜିନ୍‌ରେ 'ବିଦ୍ୟୁତ୍ ଶକ୍ତି-ଉତ୍ପାଦକ ଯନ୍ତ୍ର' (electric dynamo) ଗଠିତ ହୁଏ । ଏହି ଯନ୍ତ୍ରର ତଡ଼ିତ୍-ସ୍ରୋତ (electric current) ଦ୍ୱାରା ତାର-ସମ୍ବାଦ ବା ଟେଲିଫୋନ-ଖବର ଦିଆ ଯାଏ, ଆଲୁଅ ଜଳେ, ମୃତ୍ତିକାରୁ ଧାତୁ ବାହାର କରା ଯାଏ ଏବଂ ବିଦ୍ୟୁତ୍-ମୋଟର୍‌ର ଚକ ବୁଲି ଯେ କୌଣସି କଳ ଚଳାଇ ପାରେ । ଇଂଲଣ୍ଡ, ଜର୍ମନି ଓ ବେଲ୍‌ଜିଅମରେ ଅନେକ କଳ କାରଖାନା ଅଛି । ପ୍ରତ୍ୟେକ ହଜାର ହଜାର ସ୍ତ୍ରୀ, ପୁରୁଷ, ବାଳକ ଓ ବାଳିକା କାମରେ ଲାଗିଥାନ୍ତି । ଜର୍ମନିର ଲୁହା-କାରଖାନା ସମୂହରେ ଅସ୍ତ୍ର ଶସ୍ତ୍ର ଇତ୍ୟାଦି ତିଆରି ହୁଏ । ଇଂଲଣ୍ଡରେ ଜାହାଜ ତିଆରି ହୁଏ, ଅନେକ କପା-କଳ, ଲୋମ-କଳ ଚାଲେ । ଭାରତରେ ଅତ୍ୟଳ୍ପ କୋଇଲା ବା ଲୁହାର ଖଣି ଅଛି; ଏଣୁ ଏଠାରେ ଅତ୍ୟଳ୍ପ ସହରରେ ମାତ୍ର କଳ କାରଖାନା ଦେଖାଯାଏ । ପୃଥିବୀରେ କୃଷି, ଆକରଖନନ, ହାତ ବା କଳରେ ବିବିଧ ଜିନିଷ ତିଆରି, ମୁଦ୍ରଣ, ରେଳଗାଡ଼ୀ, ମୋଟର ବା ଜାହାଜତିଆରି, ବାଣିଜ୍ୟ ଇତ୍ୟାଦି ବ୍ୟବସାୟ ଚଳେ । ବିଭିନ୍ନ ଦେଶର ବ୍ୟବସାୟର ଗୋଟିଏ ତାଲିକା ପ୍ରସ୍ତୁତ କର ।

ପ୍ରଶ୍ନ:— ଲୋକେ କ କ ଉପାୟରେ ଜୀବିକା ନିର୍ବାହ କରନ୍ତି ?
କେଉଁ ସ୍ଥାନରେ କଳ କାରଖାନା ଦେଖାଯାଏ ?
କ କ ଶକ୍ତି ପ୍ରୟୋଗରେ ଯନ୍ତ୍ର ଚାଳିତ ହୁଏ ?



## ୭ ପୃଥିବୀର ବାଣିଜ୍ୟପଥ

ଲୋକେ ବିଭିନ୍ନ ଉପାୟରେ ଅର୍ଥାତ୍ ଯାନ ବାହନ ସାହାଯ୍ୟରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାତ୍ରା କରନ୍ତି, ଜିନିଷ ପତ୍ର ପଠାନ୍ତି । ନିବିଡ଼ ଜଙ୍ଗଲର ଯେଉଁ ଭାଗରେ ଯାନ ବାହନ ଯାଇ ନ ପାରେ, ସେଠାରେ ମନୁଷ୍ୟ ନିଜେ ବାଟ ହାଣି ଯାତ୍ରା କରେ ବା ଜିନିଷ ବୋହି ନିଏ । ଅନ୍ୟାନ୍ୟ ଭାଗରେ ଭାରବାହୀ ପଶୁମାନେ ବ୍ୟବହୃତ ହୋଇଥାନ୍ତି । ସରୀସୃପ ପର୍ବତମାର୍ଗରେ ଖଚର ଜିନିଷ ଧରି ଚାଲି ଯାଇ ପାରେ । ହିମାଳୟର ପ୍ରଧାନ ଭାରବାହୀ ପଶୁ ହେଉଛି ଚମରଗୋରୁ (yak). ତୁମେମାନେ ଜାଣିଛ, ଓଟ ମରୁଭୂମିରେ ମନୁଷ୍ୟ ଓ ଜିନିଷ ବହି ଯାଏ ଏବଂ ବଲ୍ଗାହରଣ ଓ କୁକୁର ଅତି ଶୀତଳ ତୁନ୍ଦ୍ରା ପ୍ରଦେଶରେ ତୁଷାର-ଶକଟ ଟାଣିନିଅନ୍ତି । ତେବେ ଏ ସମସ୍ତ ଉପାୟରେ ବେଶି ଜିନିଷ ପଠାଇବା ବା ମଗାଇବା କଠିନ—ବେଶି ସମୟ ମଧ୍ୟ ଲାଗେ । ଏଭଳି ଯାନ ବାହନ ଥିବା ସ୍ଥାନରେ ବିସ୍ତୃତ ବାଣିଜ୍ୟ ଚଳି ନ ପାରେ । ସଡ଼କରେ ସଗଡ଼, motor cars ଓ motor wagons ଚାଲେ । ରେଳଗାଡ଼ୀରେ ଯାତ୍ରା କରିବା କିମ୍ବା ଜିନିଷ ପତ୍ର ପଠାଇବା, ବାଣିଜ୍ୟ ଚଳାଇବା ଅତି ସୁବିଧାଜନକ । ବାଷ୍ପ ବା ତଡ଼ିତ୍ ଶକ୍ତି ଚାଳିତ ଏଞ୍ଜିନ୍‌ରେ ଟଣା ହେବା ରେଳଗାଡ଼ୀରେ ଅନେକ ଜିନିଷ ଅତି ଚଞ୍ଚଳ ପଠାଯାଇ ପାରେ ।

ସ୍ଥଳପଥ ଅପେକ୍ଷା ଜଳପଥରେ ଅଳ୍ପ ଖର୍ଚ୍ଚ ପଡ଼େ । ସଡ଼କ ତିଆରି ବା ମରାମତି କରିବା ପାଇଁ ବେଶି ଧନ ବ୍ୟୟ ହୁଏ; କିନ୍ତୁ

ଜଳରେ ଏହା ହୁଏ ନାହିଁ । ନୌକା ଟାଣିନେବା ବଡ଼ ସହଜ; ତେଣୁ ଓଜନର ସଗଡ଼ଟାଏ ସଡ଼କ ଉପରେ ଚଳାଇବା ଅପେକ୍ଷାକୃତ କଠିନ । ନଦୀ, ନାଳ, ହ୍ରଦ, ସାଗର ଓ ମହାସାଗର ମାର୍ଗରେ ରାସ୍ତାଏ ଖର୍ଚ୍ଚ ପଡ଼େ ନାହିଁ । ପ୍ରାଚୀନ କାଳରେ ପବନ ସାହାଯ୍ୟରେ ଜାହାଜ ଚାଳିତ ହେଉଥିଲା—(sailing ships). ଆଜି କାଲି କିନ୍ତୁ ପ୍ରାୟ ସମସ୍ତ ଜାହାଜ ବାଷ୍ପରେ ଚାଳିତ ହୋଇଥାଏ—(steam ships). ବୃହତ୍ ବାଷ୍ପୀୟ ପୋତ (steamer) ୨୪ ଘଣ୍ଟାରେ ୫୦୦ ମାଇଲ ଯାଇ ପାରେ ଏବଂ ବାଗଗୋଟି ଟ୍ରେନ୍‌ର ଜିନିଷ କମ୍ ଖର୍ଚ୍ଚରେ ବହି ନେଇ ପାରେ । ଦୁଇ ନଦୀ ବା ସମୁଦ୍ର ମିଶାଇବା ପାଇଁ କେନାଲ ଖୋଲା ହୁଏ । ଅନେକ ସ୍ଥାନରେ ନଦୀ ଅଧିକ ଗଭୀର ବା ଓସାର କରି ଯାଇ ପ୍ରାୟ କେନାଲରେ ପରିଣତ କରା ହୋଇ ଅଛି । କେନାଲ ଦ୍ୱାରା ନଦୀରେ ଜଳପ୍ରପାତ ବା ଅତ୍ୟୁଗ୍ରବେଗର ଅସୁବିଧା ମଧ୍ୟ ଦୂର ହୋଇଥାଏ । ଅନେକ ନଦୀ ଓ କେନାଲରେ locks ବା କବାଟ-କଳ ଛଥାଇ କରାଯାଇ ଅଛି ।

ଭୂମିମାର୍ଗ [ ବା trans-continental routes] :—

ଏଥିପୂର୍ବେ ଭାରତ ମହାଦେଶର ରେଳମାର୍ଗ ଓ ଜଳପଥ ବିଷୟ ପଢ଼ିଅଛ । ଭୂମି ସାଗର ବା ମହାସାଗର ପରି ସମତଳ ନୁହେଁ; ଏଣୁ ପାହାଡ଼, ପର୍ବତ ଉପରେ ସଡ଼କ ବା ରେଳମାର୍ଗ ନିର୍ମାଣ କରିବା କଠିନ ଓ ଅତି ବ୍ୟୟସାପେକ୍ଷ । ସମତଳ ଉପକୂଳପ୍ରଦେଶ ଓ ନଦୀ-ନିମ୍ନ-ଭୂମିରେ ସଡ଼କ ଓ ରେଳପଥ ପଡ଼ିଥାଏ । ସାଧାରଣତଃ ଗିରି-ସଙ୍କଟରେ (pass) ରେଳ ସଡ଼କ ପର୍ବତ ଭେଦ କରି ଚାଲେ —[ଦୃଷ୍ଟାନ୍ତ:ଭାରତର ପାଲଘାଟ ଗିରି-ପଥ] । ଗିରିସଙ୍କଟ ବା ଘାଟ ଭାଗ ଖୁବ୍ ଉଚ୍ଚ ହୋଇଥିଲେ, ରେଳପାଇଁ ପର୍ବତ ତଳେ ସୁଡ଼ଙ୍ଗ ଖୋଳା ହୁଏ ।

ମହାସାଗର-ମାର୍ଗ [ocean highways]:—

ତୁମ୍ଭେମାନେ ଜାଣିଛ, ସୁଏଜ୍ ଓ ପାନାମା କେନାଲ ମାର୍ଗରେ ଷ୍ଟୀମର୍ ଯାତାୟାତ କରେ । ଏ ଦୁଇ କେନାଲ ଯୋଗେ ମହାସାଗର-

ପଥ କପର ଶ୍ରେଷ୍ଠ ହୋଇ ପଡ଼ୁଛି, ତାହା ବୁଝିପାରୁଥିବ । ଆଧୁନିକ ଯୁଗର ସର୍ବପ୍ରଧାନ ମହାସାଗରମାର୍ଗ :— ୧ ୟୁରୋପ ଓ ଉତ୍ତରଆମେରିକା ମଧ୍ୟବର୍ତ୍ତୀ ମାର୍ଗ । ଏ ମାର୍ଗର ପ୍ରଧାନ ବନ୍ଦର ହେଉଛି ଲଣ୍ଡନ୍, ଲିଭର୍-ପୁଲ୍, ଅଣ୍ଟୱର୍ପ ଓ ନ୍ୟୁୟର୍କ । ୨ ଜିବ୍ରାଲ୍‌ଟର୍-ସୁଏଜକେନାଲ ମାର୍ଗ । Babel Mandeb ପ୍ରଣାଳୀରେ ପହଞ୍ଚିବାପରେ ଦ୍ୱିଖଣ୍ଡ ମାର୍ଗଟି ଭିନ୍ନ ଦିଗରେ ଯାଇଅଛି । ଏ ପ୍ରଣାଳୀଠାରୁ ଗୋଟିଏ ମାର୍ଗ ଉତ୍ତର ଦିଗରେ ବୋମ୍ବାଇ ଓ କରାଚିକୁ, ଗୋଟିଏ ମାର୍ଗ ଦକ୍ଷିଣରେ ଆଫ୍ରିକାର ପୂର୍ବୋପକୂଳବାଟେ, ଆଉ ଗୋଟିଏ ମାର୍ଗ କୋଲମ୍ବୋ ସ୍ପର୍ଶ କରି (ଦକ୍ଷିଣ-ପୂର୍ବଦିଗରେ) ସିଙ୍ଗାପୁରକୁ ଚାଲିଅଛି । ସିଙ୍ଗାପୁରରେ, ଜାପାନ ଓ ଚୀନାକୁ ଯିବା ଜାହାଜସବୁ ଉତ୍ତର-ପୂର୍ବ ଦିଗରେ ଗତି କରେ । ପ୍ରଶାନ୍ତ ମହାସାଗରର ମାର୍ଗସକଳ ଚୀନା ଓ ଜାପାନର ବନ୍ଦରମାନଙ୍କଠାରୁ San Francisco ଓ Vancouver ଓ Valparaiso ପର୍ଯ୍ୟନ୍ତ ବିସ୍ତୃତ ।



## ଜଗତର ପ୍ରସିଦ୍ଧ ବନ୍ଦର ଓ ନଗର

ଆମେରିକାରେ:— San Francisco, Valparaiso, Rio de janeiro, New Orleans, New York, Chicago, Boston. ୟୁରୋପରେ:— London, Liverpool, Birmingham, Manchester, Dublin, Glasgow, Edinburgh, Bordeaux, Lisbon, Gibraltor, Marseilles, Paris, Rome, Naples, Berlin, Venice, Hamburg.

ଏସିଆରେ:— Aden, Karachi, Bombay, Colombo, Madras, Calcutta, Rangoon, Singapore, Hongkong, Shanghai, Yokohama, Delhi, Peking.

ଆଫ୍ରିକାରେ:— Alexandria, Cape Town,

ଅଷ୍ଟ୍ରେଲିଆରେ:— Adelaide, Melbourne, Sydney, Brisbane, Darwin.।

## ଆଧୁନିକ ଜଗତର ପ୍ରସିଦ୍ଧ ସାମ୍ରାଜ୍ୟ ଓ ଜାତି

ଏଥିପୂର୍ବେ ବିଭିନ୍ନ ଦେଶର ଜାତିମାନଙ୍କ ସମ୍ବନ୍ଧରେ ସ୍ଥୂଳତଃ କେତେକ ବିଷୟ ପଢ଼ି ଜାଣିଅଛ । ଆଧୁନିକ ଜଗତର ପ୍ରଧାନ ବା ବଡ଼ ସାମ୍ରାଜ୍ୟ ଓ ଜାତି ହେଉଛନ୍ତି, ଇଂରେଜ, ରୁଷିଆ, ଚୀନା, ଜାପାନ, ଫ୍ରାନ୍ସ ଓ ଯୁକ୍ତରାଜ୍ୟ । ଏ ସମସ୍ତ ମଧ୍ୟରେ ବ୍ରିଟିଷ୍ ଜାତି, ଫରାସୀ ଓ ଯୁକ୍ତରାଜ୍ୟର ଲୋକେ ଅତିଶୟ ସଭ୍ୟ ଓ ଉନ୍ନତ । ବ୍ରିଟିଷ୍ ଓ ଫରାସୀ ଅଧିକୃତ ସ୍ଥାନ ଜଗତର ପ୍ରାୟ ସର୍ବତ୍ର ଦେଖାଯାଏ । ଜାପାନ, ଇଟାଲି, ବେଲ୍‌ଜିଅମ୍, ପୋର୍ତୁଗଲ୍ ଇତ୍ୟାଦି ଦେଶ ଅପେକ୍ଷାକୃତ ଛୋଟ । ପ୍ରାୟ ୮୦ ବର୍ଷ ପୂର୍ବେ ଜାପାନକୁ କେହି ଚିହ୍ନି ନ ଥିଲେ । କିନ୍ତୁ ଏହି ଅଳ୍ପ ସମୟ ମଧ୍ୟରେ ଜାପାନମାନେ ପୃଥିବୀର ଅତି ଉନ୍ନତ ଜାତିମାନଙ୍କ ମଧ୍ୟରେ ସମାନ ସ୍ଥାନ ପାଇଅଛନ୍ତି । ଗତ ୟୁରୋପ ଯୁଦ୍ଧ ପୂର୍ବେ ଆଫ୍ରିକା ଓ ଏସିଆରେ ଜର୍ମାନ୍-ଅଧିକୃତ ଅନେକ ସ୍ଥାନ ଥିଲା ।

ବର୍ତ୍ତମାନ (୧) ୟୁରୋପର ବ୍ରିଟିଷ୍ ଦ୍ୱୀପପୁଞ୍ଜ, ଜର୍ମାନ, ଅଷ୍ଟ୍ରିଆ, ଇଟାଲି, ତୁର୍କି, ଗ୍ରୀସ୍, ପୋର୍ତୁଗଲ୍ ଓ ସୁଇଜର୍‌ଲାଣ୍ଡ୍ (୨) ଏସିଆର ଜାପାନ ଏବଂ (୩) ଆମେରିକାର ଯୁକ୍ତରାଜ୍ୟ ଖୁବ୍ ସଭ୍ୟ, ଶିକ୍ଷିତ ଓ ଉନ୍ନତ ।

## ବ୍ରିଟିଷ୍ ସାମ୍ରାଜ୍ୟ

କଥା ଅଛି—ବ୍ରିଟିଷ୍ ସାମ୍ରାଜ୍ୟରେ କେବେ ସୂର୍ଯ୍ୟାସ୍ତ ହୁଏ ନାହିଁ । ଏଥିରୁ ଜଣାଯାଏ, ତାହା ଖୁବ୍ ବିସ୍ତୃତ—ତାହାର ଯେ କୌଣସି ଅଂଶରେ ସର୍ବଦା ସୂର୍ଯ୍ୟୋଦୟ ନ ହୋଇ ନାହିଁ । ଏହି ବିଶାଳ ସାମ୍ରାଜ୍ୟଟି ଜଗତର ଭୂଭାଗର ¼ ଅଧିକାର କରିଅଛି ଏବଂ ସମଗ୍ର ମାନବଜାତିର ¼

ଏଠାରେ ବାସ କରନ୍ତି । ବ୍ରିଟିଷ୍ ଦ୍ୱୀପପୁଞ୍ଜ, କାନାଡ଼ା, ଦକ୍ଷିଣ-ଆଫ୍ରିକା, ଅଷ୍ଟ୍ରେଲିଆ, ନ୍ୟୁଜିଲ୍ୟାଣ୍ଡ, ଭାରତ ଓ ଅନ୍ୟାନ୍ୟ କେତୋଟି ଦେଶ, ଦ୍ୱୀପକୁ ନେଇ ବିଶାଳ ବ୍ରିଟିଷ୍ ସାମ୍ରାଜ୍ୟ ଗଠିତ । ବ୍ରିଟିଷ୍ ଦ୍ୱୀପପୁଞ୍ଜ ସାମ୍ରାଜ୍ୟର କେନ୍ଦ୍ର ଭାଗରେ ଅବସ୍ଥିତ—ଇଂଲଣ୍ଡ ହେଉଛି ଏହାର ମାତୃ-ଦେଶ (mother-country). ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଜାତି ବାସ କରନ୍ତି, ବିଭିନ୍ନ ଜଳବାୟୁ ଅନୁଭୂତ ହୋଇଥାଏ ।

କାନାଡା, ଦକ୍ଷିଣ-ଆଫ୍ରିକା, ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଣ୍ଡ୍‌କୁ 'Dominions' କହନ୍ତି । ରାଜ୍ୟର ଆଭ୍ୟନ୍ତରୀଣ ଶାସନ ନିମନ୍ତେ ପ୍ରତ୍ୟେକ dominion ଦାୟୀ । ସମଗ୍ର ସାମ୍ରାଜ୍ୟର ବାହାର ବିଷୟ (outside affairs) ଓ ବିଦେଶ-ସଂକ୍ରାନ୍ତ ବିଷୟ ଇଂଲଣ୍ଡ ବୁଝେ । ଏହା ଛଡ଼ା, ସାମ୍ରାଜ୍ୟର ଅନ୍ୟାନ୍ୟ ଭାଗ 'Dependencies' (ଅଧୀନ ରାଜ୍ୟସକଳ) । ପ୍ରଧାନ Dependencies ତିନି ଶ୍ରେଣୀରେ ବିଭକ୍ତ:— ୧ ଏସିଆରେ ଭାରତ,ସିଂହଳଦ୍ୱୀପ ଓ ମାଳୟ ଉପଦ୍ୱୀପ ୨ ଆଫ୍ରିକାରେ ମିଶର, ସୁଦାନ୍, ଉଗାଣ୍ଡା, ବ୍ରିଟିଷ୍-ପୂର୍ବ-ଆଫ୍ରିକା ଓ ନାଇଜିରିଆ ୩ West Indies ଓ Guiana. ଏହି ସମସ୍ତ ଅଧୀନ-ରାଜ୍ୟରେ ଅଳ୍ପ କେତେକ ଜଣ ଗୋରା ବା ସାହେବ ବଡ଼ ସରକାର-କର୍ମଚାରୀ, ପାଦ୍ରି ବା ମିସନେରି, ଏଞ୍ଜିନିଅର୍, ବଣିକ ଏବଂ ରେଳମାର୍ଗ ଓ ଯୋଡାଶ୍ରମର ଫୋର୍‌ମେନ୍ (foreman) ରୂପେ ବାସ କରୁ ଅଛନ୍ତି । ସମଗ୍ର ସାମ୍ରାଜ୍ୟର ଶାସନ-ଭାର ବିଲାତରେ ।

ପ୍ରଶ୍ନ:— କି କି ଉପାୟରେ ମନୁଷ୍ୟ ସ୍ଥାନରୁ ସ୍ଥାନାନ୍ତରକୁ ଯାତ୍ରା କରେ ଓ ଜିନିଷ ପଠାଏ ?

Dominions ଓ Dependencies ବୋଲିଲେ କଣ ?

[ ସ ମା ପ୍ତ ]

STORE

# Middle School Serie[s]

---

୧ ସରଳ ସାହିତ୍ୟ ୧ମ ସୋପାନ ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ.
(ଚତୁର୍ଥ ଶ୍ରେଣୀ ନିମନ୍ତେ) ଓ
ଶ୍ରୀ ନୀଳକଣ୍ଠ ରଥ

୨ ,, (୫ମ ଶ୍ରେଣୀ) ,, ୨ୟ

,, ୩ୟ, ୪ର୍ଥ ଓ ୫ମ [ଶୀଘ୍ର ପ୍ରକାଶିତ ହେବ]

ଭାରତ ଇତିହାସ ୧ମ ଭାଗ (ପ୍ରଥମ ଫର୍ମ୍ ବା ୬ଷ୍ଠ ଶ୍ରେଣୀ ପାଇଁ) ଶ୍ରୀ କାଳିଆ ପାଣିଗ୍ରାହୀ ଏଲ୍. ଟି. ଓ ଶ୍ରୀ କୁଳମଣି ମିଶ୍ର ଏମ୍. ଟି

( ୨ୟ ଫର୍ମ ବା ୭ମ ଶ୍ରେଣୀ ପାଇଁ) ,,

,, ( ୩ୟ ଫର୍ମ୍ ବା ୮ମ ଶ୍ରେଣୀ ନିମନ୍ତେ)
ଶ୍ରୀ କାଳିଆ ପାଣିଗ୍ରାହୀ ବି. ଏ. ଏଲ୍.ଟି

ପ୍ରାଥମିକ ବିଜ୍ଞାନପାଠ (୨ମ ଫର୍ମ୍ ବା ୬ଷ୍ଠ କ୍ଲାସ୍ ପାଇଁ)
ଶ୍ରୀ ଶ୍ୟାମସୁନ୍ଦର ଶତପଥୀ, ବି. ଏ. ଏଲ୍. ଟି

୭ ପ୍ରାଥମିକ ଚରିତ (୧ମ ଫର୍ମ୍ ପାଇଁ) ଶ୍ରୀ ହୀରାଲାଲ ବର୍ଦ୍ଧନ,
ବି. ଏ. ଏଲ୍.ଟି

୮ ଭୂଗୋଳ ଶିକ୍ଷା (ପ୍ରଥମ ଫର୍ମ୍ ନିମନ୍ତେ) ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ.

୯ ,, (ଦ୍ୱିତୀୟ ଫର୍ମ୍ ନିମନ୍ତେ) ,,

୧୦ ,, (ତୃତୀୟ ଫର୍ମ୍ ନିମନ୍ତେ) ,,

୧୧ ସରଳ ଗଣିତ ଶିକ୍ଷା (ଚତୁର୍ଥ ଶ୍ରେଣୀ ନିମନ୍ତେ) ଶ୍ରୀ ଦିବାକର ପଟ୍ଟନାୟକ

୧୨ ,, (ପଞ୍ଚମ ଶ୍ରେଣୀ ନିମନ୍ତେ) ,,

ଛାତ୍ର ଭଣ୍ଡାର
ବ୍ରହ୍ମପୁର (ଗଞ୍ଜାମ)

**The Students' St[ore]**
Berhampore (Ganjam)